# ଉତ୍ସର୍ଗ

ଯାହାଙ୍କ ବଳିଷ୍ଠ ବ୍ୟକ୍ତିତ୍ୱର ପୂର୍ଣ୍ୟ ପ୍ରଭାବରେ ଏ ଗ୍ରନ୍ଥକାରର ବିଶୃଙ୍ଖଳ ବିକ୍ଷୋଭିତ ଜୀବନରେ ବିଶୁଦ୍ଧ ଆର୍ଯ୍ୟ-ନୀତି ଓ ଆର୍ଯ୍ୟ-ଭାବର ପ୍ରଭାବ ଫୁଟିଅଛି, ଆବାଲ୍ୟଗୁରୁ ଚିରସଖା ଆର୍ଯ୍ୟପ୍ରାଣ ସେହି **ଗୋପବନ୍ଧୁ ଦାସଙ୍କ** ତ୍ୟାଗପୂତ ନିଷ୍କଳଂକ ନାମ ଗ୍ରହଣ କରି ଏ **ଆର୍ଯ୍ୟଜୀବନ** ପାଠକମାନଙ୍କୁ ଦିଆଗଲା ।

# ନିବେଦନ

ଏ ଗ୍ରନ୍ଥରେ ଆର୍ଯ୍ୟଜୀବନର କେବଳ ସ୍ଥିତି, ବିକାଶ ଓ ବ୍ୟାପ୍ତି ଅନୁସଂଧାନ କରାଯାଇଅଛି । ଭାରତବାସୀର ଜୀବନ ଏଣିକି କଣ ହେବା ଉଚିତ, ସେ ବିଷୟରେ ସବିଶେଷ ଆଲୋଚନା କରିବା ଏ ଗ୍ରନ୍ଥର ଉଦ୍ଦେଶ୍ୟ ନୁହେ; ମାତ୍ର ଭ୍ରମବଶତଃ ପୂର୍ବେ ଏହାର କୌଣସି କୌଣସି ପ୍ରକାଶିତ ପ୍ରବଂଧକୁ ଲୋକେ ସେହି ଦୃଷ୍ଟିରେ ଦେଖିବାର ଶୁଣାଯାଇଅଛି । ଗ୍ରନ୍ଥପାଠବେଳେ ଗ୍ରନ୍ଥର ପ୍ରକୃତ ଉଦ୍ଦେଶ୍ୟ ପ୍ରତି ଲକ୍ଷ୍ୟରଖି ଆଲୋଚନା କଲେ, ଅବବୋଧ ସୁଗମ ଓ ସ୍ପଷ୍ଟ ହେବ । ସେଥିପାଇଁ ଏ କଥା କହିରଖିବା ଆବଶ୍ୟକ ମନେକରାଗଲା ।

ଏ ଗ୍ରନ୍ଥର ପ୍ରବନ୍ଧଗୁଡ଼ିକ ପୂର୍ବେ 'ସତ୍ୟବାଦୀ' ମାସିକ ପତ୍ରରେ ଟିକିଏ ଭିନ୍ନ ଆକାର ପ୍ରକାରରେ ବାହାରିଥିଲା । ବର୍ତ୍ତମାନ ସବୁ ପ୍ରବନ୍ଧର ପ୍ରାୟ ସବୁ ଅଂଶ ପୁନର୍ବାର ଲେଖାହୋଇ ଏ ଗ୍ରନ୍ଥରେ ପ୍ରକାଶ କରାଗଲା ।

ସମ୍ବଲପୁର                                                    **ନୀଳକଂଠ ଦାସ**
୧୧.୯.୨୧

# ଏହି ପୁସ୍ତକ ସଂବନ୍ଧରେ ପଦେ-ଅଧେ

ବୈଦେଶିକ ବସ୍ତୁବାଦୀ ଦୃଷ୍ଟିକୋଣର ତୀବ୍ର ପ୍ରବାହ ଦ୍ୱାରା ଆମ ଦେଶର ପରଂପରା, ଏପରିକି ଜନଜୀବନ ମଧ୍ୟ, ଏକ ବିରାଟ ସଂକଟର ସମ୍ମୁଖୀନ ହୋଇଛି । ଆମର ପୁରାତନ ଆର୍ଯ୍ୟ ସଂସ୍କୃତି ଆଧ୍ୟାତ୍ମିକତା ଉପରେ ପର୍ଯ୍ୟବସିତ, ତାହାହିଁ ଆମର ସମାଜକୁ ଏପର୍ଯ୍ୟନ୍ତ ଧରିରଖିଛି । ଆମର ଯୁବସମାଜ ସେଥିପ୍ରତି ଉନ୍ମୁଖ ହେଲେ ଆମ ଐତିହ୍ୟ ନଷ୍ଟ ହୋଇ ଜନଜୀବନ ଅସ୍ତବ୍ୟସ୍ତ ହୋଇଯିବା ଅସମ୍ଭବ ନୁହେଁ ।

ବିଂଶ ଶତାବ୍ଦୀର ପ୍ରାରମ୍ଭରୁ ବିଖ୍ୟାତ ବିଦ୍ୱାନ୍, ମହାମନୀଷୀ ନୀଳକଂଠଙ୍କ ହୃଦୟରେ ସେହି ଅବକ୍ଷୟକୁ ଅବରୋଧ କରିବାର ଚିନ୍ତା ଉଦିତ ହୋଇଥିଲା । ଏହି ଆର୍ଯଜୀବନ ପୁସ୍ତକର ଚିନ୍ତାଧାରା ସେହି ଭାବନାର ପରିପ୍ରକାଶ ।

ଦେଶପ୍ରାଣ ନୀଳକଂଠ ୧୯୧୧-୧୮ ପର୍ଯ୍ୟନ୍ତ ବିଖ୍ୟାତ ସତ୍ୟବାଦୀ ଗୁରୁକୁଳର ଅଧ୍ୟକ୍ଷ ରହି ଦେଶର ଯୁବ ସମାଜକୁ ଆର୍ଯ ସଂସ୍କୃତିର ଆଦର୍ଶରେ ଅନୁପ୍ରାଣିତ କରିବା ପାଇଁ ଆପ୍ରାଣ ଉଦ୍ୟମ କରିଥିଲେ ।

ନିଜର ଆଦର୍ଶ ଶିକ୍ଷାପଦ୍ଧତିର ପ୍ରସାର ପାଇଁ ଦାର୍ଶନିକ ନୀଳକଂଠ ସେହି ବନବିଦ୍ୟାଳୟର ମୁଖପତ୍ର 'ସତ୍ୟବାଦୀ' ମାସିକ ପତ୍ରିକାରେ ଧାରାବାହିକ ପ୍ରବନ୍ଧ ଭାବରେ 'ଆର୍ଯଜୀବନ' ସଂବନ୍ଧୀୟ ପ୍ରବନ୍ଧଗୁଡ଼ିକ ପ୍ରକାଶ କରିଥିଲେ ।

ପଂଡିତ ନୀଳକଂଠଙ୍କର ଅଧ୍ୟୟନ-ପଟୁତା, ସମାଜ-ସଂସ୍କାର, ଅଧ୍ୟାପନା ସାହାଯ୍ୟରେ ଚରିତ୍ର ଗଠନ ପ୍ରଭୃତିର ସ୍ପଷ୍ଟ ପଦଚିହ୍ନ ଏହି ପୁସ୍ତକକୁ ପ୍ରଭାବିତ କରିଛି । ୧୯୨୧ରେ ଏ ପ୍ରବନ୍ଧଗୁଡ଼ିକ ସଂଗୃହୀତ ହୋଇ ପ୍ରଥମେ ପୁସ୍ତକ ଆକାରରେ ପ୍ରକାଶିତ ହୋଇଥିଲା ।

ଦେଶର ଛାତ୍ର ଓ ଶିକ୍ଷିତ ସମାଜକୁ ଆର୍ଯ ସଂସ୍କୃତି ପ୍ରତି ସଚେତନ କରାଇବା ଏ ପୁସ୍ତକର ପ୍ରଧାନ ଉଦ୍ଦେଶ୍ୟ । ପରବର୍ତ୍ତୀ କାଳରେ ସେ ସେହି ଉଦ୍ଦେଶ୍ୟରେ, ଶ୍ରୀମଦ୍‌ଭଗବତ୍ ଗୀତାର ଭାଷ୍ୟ, ସଂସ୍କୃତି ଓ ସଂସ୍କୃତି, ଜଗନ୍ନାଥ କଲ୍‌ଟ ପ୍ରଭୃତି ବହୁ ଗବେଷଣାତ୍ମକ ଓ ଭାବଗର୍ଭକ ପୁସ୍ତକ ଓ ପ୍ରବନ୍ଧ ରଚନା କରିଯାଇଛନ୍ତି । ସେହି ଉପାଦେୟ ଲେଖାଗୁଡ଼ିକ ସୁଧୀଜନଙ୍କ ଦ୍ୱାରା ଆଦୃତ ହୋଇଆସୁଛି ।

ବେଦ, ଉପନିଷଦ୍, ପ୍ରାଚୀନ ବୌଦ୍ଧ ଗ୍ରନ୍ଥ ସହିତ ସୁମେର୍, ଆସିରୀଆ, ମିଶର, ଗ୍ରୀକ୍, ରୋମ୍, ବାବିଲୋନିଆନ୍ ସଭ୍ୟତାଠାରୁ ଆରମ୍ଭକରି ଦ୍ରାବିଡ଼ ସଭ୍ୟତା ସମ୍ବନ୍ଧୀୟ ବହୁ ଗ୍ରନ୍ଥ ଅଧ୍ୟୟନ ଓ ଆଲୋଚନା କରି, ଆର୍ଯ୍ୟର ଜୀବନପ୍ରବାହ, ଧର୍ମ-ଧାରଣା, ଦାର୍ଶନିକ ଅଭିବ୍ୟକ୍ତି ସଂବନ୍ଧରେ ସଂକ୍ଷିପ୍ତ ଭାବରେ ଆ[illegible]ନ ପୁସ୍ତକରେ ସେ ଉପସ୍ଥାପିତ କରିଛନ୍ତି ।

ଆର୍ଯ୍ୟ ସଂସ୍କୃତିର ବିଚାର ଅନୁସାରେ 'ଜୀବନ'କୁ ସେ ଏକ ନୀତି ବୋଲି ପ୍ରମାଣକରି, ତା'ର ବୃଦ୍ଧି, କ୍ଷୟ ଓ ବିବର୍ତ୍ତନକୁ ତା'ର ନିୟମ ବୋଲି ପ୍ରତିପାଦିତ କରିଛନ୍ତି । ଏହି ଆତ୍ମଶକ୍ତିମୟ ନୀତିର ବଳରେ ଜୀବିତ ବସ୍ତୁ ନିଜର ବୃଦ୍ଧି, କ୍ଷୟ ଓ ବିବର୍ତ୍ତନ ପ୍ରଭୃତିର ଉପାଦାନ ସଂଗ୍ରହ କରି ଜୀବନ ଧାରଣ କରିପାରୁଛି ।

ମାନବ ଜୀବନର ପ୍ରକୃତିକୁ ଆର୍ଯ୍ୟ ଦର୍ଶନ 'ଧର୍ମ' ଭାବରେ ଗ୍ରହଣ କରିଛି । ଧର୍ମହିଁ ମାନବର ମାନବତ୍ୱ, ତେଣୁ ଆର୍ଯ୍ୟର ଧର୍ମଧାରଣା ଦୃଢ଼, ସ୍ଥିର ଓ ନିତ୍ୟ । ବିଭିନ୍ନ ଈଶ୍ୱରାଦି ବିଷୟକ ମତବାଦ ଆର୍ଯ୍ୟର ଧର୍ମ ନୁହେଁ । ଅବଶ୍ୟ ନାନାପ୍ରକାର ମତବାଦ ଆର୍ଯ୍ୟ ସଂସ୍କୃତିରେ ପ୍ରକାଶ ପାଇଛି, କିଂତୁ ଏସବୁ ମତବାଦରୁ 'ଧର୍ମ' ଜାତ ହୋଇନାହିଁ । ତେଣୁ ଆର୍ଯ୍ୟର ସନାତନ ଧର୍ମ ଆଧ୍ୟାତ୍ମିକ ମାନବ ତତ୍ତ୍ୱ ହୋଇ ରହିଆସିଛି ।

ସନାତନ ବିଶ୍ୱ ଶୃଙ୍ଖଳାରେ ଆର୍ଯ୍ୟର ପରମ ବିଶ୍ୱାସ । ତାହାର ବିଶ୍ୱାସ ନିର୍ବିକଳ୍ପ ଭଗବାନ ତଥା ତାଙ୍କର ବିଶ୍ୱ ନିୟମ ସବୁ ଏକ ଓ ନିର୍ଦ୍ଦିଷ୍ଟ ଈଶ୍ୱର ସୃଷ୍ଟିର କାରଣ । ସୃଷ୍ଟି ନିୟମ ହିଁ ଧର୍ମ । ଏହା ଅକାଟ୍ୟ ଓ ସ୍ଥିର । ଈଶ୍ୱର ମଧ୍ୟ ଏହାର ପରିବର୍ତ୍ତନ କରିପାରିବେ ନାଇଁ, ଅର୍ଥାତ୍ କରିବେ ନାଇଁ । କଲେ ସୃଷ୍ଟି ନିୟମର ବ୍ୟଭିଚାର ଘଟିବ, ବିଶ୍ୱ-ଶୃଂଖଳାରେ କିଛି ନୀତି ରହିବ ନାହିଁ ।

ଆର୍ଯ୍ୟର ଈଶ୍ୱର ତଥା ଧର୍ମ ସତ୍ ବା ସତ୍ୟ । ମାନବ ନିଜର ବୁଦ୍ଧି ବଳରେ ସେ ସତ୍ୟର ନାନା ବ୍ୟାଖ୍ୟା କରିବାଦ୍ୱାରା ଆପାତତଃ ଭିନ୍ନ ଭିନ୍ନ ମତବାଦ ସୃଷ୍ଟି ହୁଏ । ସେ ବ୍ୟକ୍ତିଗତ ମତଗୁଡ଼ିକରେ ଆର୍ଯ୍ୟଧର୍ମ ବାଧାଦିଏନାହିଁ, ତେଣୁ ଧର୍ମ କନ୍ଦଳ ସୃଷ୍ଟି ହୁଏନାହିଁ । କିନ୍ତୁ ପୃଥିବୀର ଅନ୍ୟ ଧର୍ମମାନଙ୍କରେ ମତବାଦ ହିଁ ଧର୍ମର ସର୍ବସ୍ୱ । ସେଠାରେ ଏହିପରି ମତବାଦକୁ ଧର୍ମର ଆଖ୍ୟା ଦିଆଯାଇଛି । ତେଣୁ ଜଣେ ଜଣେ ବ୍ୟକ୍ତିଙ୍କ ମତବାଦକୁ ଧର୍ମ ନାମରେ ପ୍ରଚାରିତ କରାଯାଇଛି । ତେଣୁ ସେ ମତବାଦ ଉପରେ ଅନ୍ୟର ସମାଲୋଚନାର ଅଧିକାର ନାହିଁ । ସେହି ଧର୍ମପନ୍ଥୀଂକର ସେହି ନିର୍ଦ୍ଦିଷ୍ଟ ମତବାଦରେ ବିଶ୍ୱାସ ଥାଉ ବା ନଥାଉ, ବିଶ୍ୱାସ ଅଛି ବୋଲି କହିବାକୁ ସେହି ଧର୍ମାବଲମ୍ବୀମାନେ ବାଧ୍ୟ । ସେହି ମତବାଦ ଉପରେ ମନୁଷ୍ୟ ସ୍ୱାଧୀନ ଚିନ୍ତା ବା ଆଲୋଚନା ପ୍ରକାଶକଲେ ସେ ଧର୍ମଦ୍ରୋହୀ ବା ଧର୍ମବିରୋଧୀ ବୋଲି ବିବେଚିତ ହୁଏ । ସେହି ଧର୍ମମାନଙ୍କର ଅସହିଷ୍ଣୁତା ପ୍ରକୃତି ଯୋଗୁ ଅନ୍ୟ ମତବାଦମାନଙ୍କୁ ଦଳି ନିଜର ମତବାଦକୁ ଶ୍ରେଷ୍ଠ ବୋଲି ପ୍ରତିପାଦିତ କରିବାପାଇଁ ସେମାନେ ସର୍ବଦା ତତ୍ପର । ସେଥିପାଇଁ ପୃଥିବୀ ବକ୍ଷରେ ବହୁ ଧର୍ମଯୁଦ୍ଧ ଘଟିଯାଇଛି ଓ ଘଟୁଛି । କିଂତୁ ଆର୍ଯ୍ୟର ସନାତନ ବୈଦିକ ଧର୍ମରେ ଈଶ୍ୱର ବିଶ୍ୱବ୍ୟାପି । ପ୍ରକୃତିର ଛତ୍ରେ ଛତ୍ରେ ସେ ରହିଛନ୍ତି । ସେହି ସତ୍ ବା ସତ୍ୟ । ତାହା ଉପଲବ୍ଧି କରାଇବାପାଇଁ ଆର୍ଯ୍ୟଋଷିପ୍ରତିମ

ନୀଳକଂଠ ସତ୍ୟବାଦୀ ଗୁରୁକୁଳର ଛାତ୍ରମାନଙ୍କୁ ବ୍ରହ୍ମଚର୍ଯ୍ୟ ବ୍ରତରେ ବ୍ରତୀ କରାଇବା ସଂଗେ ସଂଗେ ସେମାନଂକ ମନରେ ସତ୍ ବା ବ୍ରହ୍ମ ଚିନ୍ତନ ଉଦ୍ରେକ କରାଉଥିଲେ ।

ସେ ବୈଦିକ ମଂନ୍ତ୍ରକୁ ଓଡ଼ିଆରେ ଅନୁବାଦ କରି ସେହି ଗୁରୁକୁଳରେ ଉପାସନାରୂପେ ପ୍ରଚଳିତ କରିଥିଲେ । ଗୁରୁ ଓ ଶିଷ୍ୟମାନେ ଏକାଠି ବସି ସକାଳର ବ୍ରାହ୍ମମୁହୂର୍ତ୍ତରେ ଓ ସଂଧ୍ୟା ଆଗମରେ ସେହି ଉପାସନା ଗାନକରୁଥିଲେ ।

ସେହି ଉପାସନାର ମୂଳ ସଂସ୍କୃତରେ ଲିଖିତ ପ୍ରଥମ ଓ ଦ୍ୱିତୀୟ ପଦ –

(୧)

ଓଁ ଲୋକେଶ ଚୈତନ୍ୟ ମୟାଧିଦେବ
ମଙ୍ଗଲ୍ୟ ବିର୍ଷ୍ଣୋ ଭବଦାଜ୍ଞ ୟୈବ
ହିତାୟ ଲୋକସ୍ୟ ତବ ପ୍ରିୟାର୍ଥଂ
ସଂସାର ଯାତ୍ରା ମନୁବର୍ତ୍ତୟିଷ୍ୟେ ।

(୨)

ଓଁ ସପର୍ଯ୍ୟଗାତ୍ ଶୁକ୍ରମକାୟମବ୍ରଣଂ
ଅସ୍ନାବିରଂ ଶୁଦ୍ଧ ମ ପାପ ବିଦ୍ଧଂ
କବିର୍ମନୀଷୀ ପରିବଭୂଃସ୍ୱୟଂଭୂଃ
ର୍ଯଥା ତଥ୍ୟତୋଽର୍ଥାନ୍ ବ୍ୟଦଧାତ୍
ଶାଶ୍ୱତୀଭାଃ ସମାଭ୍ୟଃ ।

ନୀଳକଂଠଂକ ଅନୁବାଦ –

(୧)

ଜ୍ଞାନମୟ ଲୋକେଶ୍ୱର ମଙ୍ଗଳ ନିଦାନ
ସର୍ବବ୍ୟାପି ତବାଦେଶେ ଚରାଚର ହିତେ
ତବ ପ୍ରୀତି-ଅର୍ଥେ ପ୍ରଭୁ ଆଚରେ ସନ୍ତତ
କର୍ମମୟ ପୁଣ୍ୟମୟ ସଂସାର ସଂଗ୍ରାମ ।

(୨)

ସର୍ବଅନ୍ତର୍ଯ୍ୟାମୀ ଶୁଦ୍ଧ ନିରଞ୍ଜନ ବିଭୋ,
ନାହିଁ ବ୍ରଣ, ନାହିଁ ସ୍ନାୟୁ ନାହିଁ ତବ ଭୌତିକବିଗ୍ରହ
ତ୍ରିକାଳଜ୍ଞ ଦ୍ରଷ୍ଟା ତୁମ୍ଭେ ସର୍ବୋପରି ଅଧିଷ୍ଠାନ ତବ;
ଅନାଦି କାରଣ ନିଜେ ନିଜର ସମ୍ଭବ ପ୍ରଭୋ
ସନାତନ କାଳ ଯାଏଁ ତତ୍ତ୍ୱାର୍ଥ ସକଳ
ଧରିଛ ହେ ଶାଶ୍ୱତ ଶରୀରେ ।

ଏହି ଉପାସନାର ସମସ୍ତ ପଦ ପରବର୍ତ୍ତୀ କାଳରେ ପଂଡିତ ନୀଳକଂଠଂକ 'ଭକ୍ତିଗାଥା' ପୁସ୍ତିକାରେ ପ୍ରକାଶପାଇଥିଲା ।

ସେହି ଭକ୍ତିଗାଥା ପୁସ୍ତକର 'ଆର୍ତ୍ତବାଣୀ' ପଦ୍ୟରେ ସେ ଲେଖିଛନ୍ତି –

ଅପଥ ସେ ବ୍ୟୋମଦେଶେ ଅନନ୍ତ ବିତାନେ
ଚଳଇ ତାରକା ତବ ଇଙ୍ଗିତ ଆଦରି;
ଅନନ୍ତ ସଂଚାରମୟ ପ୍ରକୃତି ପ୍ରାଂଗଣେ
ତୁମ୍ଭରି ଶାସନେ ଖେଳେ କବିତ୍ୱ ମାଧୁରୀ;
ମୃତ୍ୟୁରେ ଅମୃତ ଭାସେ,
ଜନମ ହସଇ ଧ୍ୱଂସେ
ତୁମରି ସେ ଅମୃତର ମହିମା ସୁମରି ।

ନୀଳକଂଠଂକର ଏହିସବୁ ପାଣ୍ଡିତ୍ୟପୂର୍ଣ୍ଣ ଦାର୍ଶନିକ ବିଶ୍ଳେଷଣ ତାଙ୍କର ଏହି 'ଆର୍ଯ୍ୟଜୀବନ' ପୁସ୍ତକକୁ ମଧ୍ୟ ପୁଷ୍ଟ କରିଛି ।

୧୯୨୭ ମସିହାରେ ବିଶିଷ୍ଟ ହିନ୍ଦୀ ଲେଖକ ଜୈନେନ୍ଦ୍ର କୁମାର ନୀଳକଂଠଂକ ଆର୍ଯ୍ୟଜୀବନ ପୁସ୍ତକକୁ ହିନ୍ଦୀରେ ଅନୁବାଦ କରିଥିଲେ । ତାର ନୂତନ ହିନ୍ଦୀ ସଂସ୍କରଣ କଟକର ରାଷ୍ଟ୍ରଭାଷା ସମବାୟ ସମିତି ୧୯୮୮ରେ ପ୍ରକାଶ କରିଥିଲେ ।

ସେହି ହିନ୍ଦୀ ପୁସ୍ତକର ମୁଖବନ୍ଧରେ ଅନୁବାଦକ ଶ୍ରୀ ଜୈନେନ୍ଦ୍ରକୁମାର ଲେଖିଛନ୍ତି – ''ଏହି ପୁସ୍ତକର ବିଷୟବସ୍ତୁ ଗଭୀର ଓ ବିଶ୍ଳେଷଣାତ୍ମକ । ଏହା ମୂଳରୁ ଶେଷ ପର୍ଯ୍ୟନ୍ତ ବାହାରକୁ ବାଦାମ ଫଳ ପରି କଠିନ ମନେହେଉଥିଲେ ମଧ୍ୟ ଏହାର ଭିତର ରସପୂର୍ଣ୍ଣ ।''

ଆର୍ଯ୍ୟଜୀବନ ପୁସ୍ତକଟି ମନୋନିବେଶ ସହିତ ପାଠକରି ସେ ସଂବନ୍ଧରେ ଆଲୋଚନା କଲେ ପାଠକମାନେ ତାର ବିଷୟବସ୍ତୁ ଓ ତତ୍ତ୍ୱ ହୃଦୟଂଗମ କରି ସେ ଅମୃତ ରସ ଆସ୍ୱାଦନ କରିପାରିବେ ।

ଆର୍ଯ୍ୟଜୀବନ ପୁସ୍ତକଟି ପୂର୍ବରୁ ବିଶ୍ୱବିଦ୍ୟାଳୟର ଏମ୍.ଏ. ଶ୍ରେଣୀରେ ପାଠ୍ୟପୁସ୍ତକ ରୂପେ ଚଳୁଥିଲେ ମଧ୍ୟ ବହୁକାଳରୁ ଦୁଷ୍ପ୍ରାପ୍ୟ ହୋଇପଡ଼ିଥିଲା । କଟକ ଗ୍ରନ୍ଥମନ୍ଦିରର ସ୍ୱନାମଧନ୍ୟ ସାହିତ୍ୟପ୍ରେମୀ ପ୍ରକାଶକ ଶ୍ରୀ ଅଭିରାମ ମହାପାତ୍ର କଷ୍ଟ ସ୍ୱୀକାର କରି ଏ ପୁସ୍ତକର ପ୍ରକାଶନ ଭାର ଗ୍ରହଣ କରିଥିବାରୁ ମୁଁ ତାଙ୍କଠାରେ କୃତଜ୍ଞତା ଜ୍ଞାପନ କରୁଛି ।

ଏ ପୁସ୍ତକ ସୁଧୀ ପାଠକମାନଙ୍କଦ୍ୱାରା ଆଦୃତ ହେଲେ ଦେଶର ଏ ସଂକଟବେଳେ ଏହା ଆମ ପୁରାତନ ସଂସ୍କୃତି ଓ ସମାଜର ମଂଗଳ କରିବ ।

ଜେଲ୍‌ରୋଡ଼ — ପ୍ରଫେସର୍ ଡାକ୍ତର ବିକ୍ରମ ଦାସ
କଟକ — ସଂକଳକ
୧୦.୩.୯୯

# ସୂଚୀ



—

# ପ୍ରଥମ ଅଧ୍ୟାୟ

## ଆର୍ଯ୍ୟଜୀବନର ପ୍ରକୃତି

ଜୀବ ଜଂତୁ, ବୃକ୍ଷ ଲତା, କାଷ୍ଠ ପାଷାଣ ପ୍ରଭୃତି ଅସଂଖ୍ୟ ବସ୍ତୁ ଆଂଭେମାନେ ଦେଖୁଅଛୁଁ ଓ ଦେଖିବାମାତ୍ରେ ଜାଣୁଅଛୁ, ସେଥିମଧ୍ୟରୁ କେତେକ ନିର୍ଜୀବ ବା ଜଡ଼ ଓ ଅନ୍ୟ କେତେକର ଜୀବନ ଅଛି। ନିଜେ ବୃଦ୍ଧି ବା କ୍ଷୟ ପାଇବା କିଂବା ନିଜେ ନିଜେ ପରିବର୍ତ୍ତିତ ହେବାର ଶକ୍ତି ଜଡ଼ ବସ୍ତୁର ନାଇ। ଖଂଡେ ପଥର ଯେଉଁଠାରେ ଯେପରି ପଡ଼ିଅଛି, କେହି ଅନ୍ୟ ପ୍ରକାର କରି ନ ଦେଲେ, ସେ ସେହିପରି ପଡ଼ିଥିବ। ସେ ବଢ଼ିବ ନାଇ କିଂବା ପାଣି ପବନ ବା ଅନ୍ୟ କୌଣସି ପଦାର୍ଥର ଘର୍ଷଣ ବା ଆଘାତ ବିନା ଛିଡ଼ିବ ନାଇ। କିଂତୁ ଜୀବଂତ ବସ୍ତୁର କଥା ଭିନ୍ନ। ସେ ନିଜେ ବଢ଼େ– ରୁଗ୍‌ଣ ବା ବୃଦ୍ଧ ହେଲେ ନିଜେ ଛିଡ଼େ; ପୁଣି ଅବସ୍ଥାର ପରିବର୍ତ୍ତନରେ ନିଜେ ନିଜେ ପରିବର୍ତ୍ତିତ ହୁଏ। ସାଧାରଣ ଗୋଟିଏ ସାନ ଗଛକୁ ଅଂଧାରରେ ରଖିଦେଲେ ସେ ଆଲୁଅ ଆଡ଼କୁ ଡାଳ ଲଂବାଇ ଦିଏ, ଖତ ପାଇଲେ ପୁଷ୍ଟ ହୁଏ; ତା ଦେହରେ ଗାତ ଖୋଳିଦେଲେ ବେଳେବେଳେ ଲଇଁପଡ଼ି ବଂକା ହୋଇଯାଏ। ତାହାର ଜୀବନ ଥିବାରୁ ଏପରି ଘଟୁଅଛି।

ଜୀବନ ଗୋଟିଏ ନୀତି। ଏହା ବୃଦ୍ଧି, କ୍ଷୟ, ବିବର୍ତ୍ତନାଦିର ଗୋଟିଏ ନିୟମ। ଏହି ନୀତି ଆଭ୍ୟଂତରିକ ଶକ୍ତି ରୂପରେ ଜୀବଂତ ବସ୍ତୁ ମଧ୍ୟରେ ରହିଅଛି। ଏହି ଆତ୍ମଶକ୍ତିମୟ ନୀତି ବଳରେ ଜୀବଂତ ବସ୍ତୁ ନିଜର ଖାଦ୍ୟ; ଅର୍ଥାତ୍ ବୃଦ୍ଧି କ୍ଷୟ ପରିବର୍ତ୍ତନର ଉପାଦାନ ସଂଗ୍ରହ କରି ଆତ୍ମବିକାଶ ସଂପାଦନ କରେ। ଜୀବନ ଗୋଟିଏ ଆଭ୍ୟଂତରୀଣ ଶକ୍ତି ହେଲେହେଁ, ଏହି ନୀତିହିଁ ତାହାର ପ୍ରଧାନ ଲକ୍ଷଣ। ଏହି ନୀତିର କ୍ରିୟା ଦେଖି ଆଂଭେମାନେ ଜୀବନ ଚିହ୍ନୁ।

ଏହି କ୍ରିୟାରେ ପୁଣି ଗୋଟିଏ ପୂର୍ବାପର ଧାରା ବା ପରଂପରା ଅଛି। ସେଥିପାଇଁ ମଧ୍ୟ କୁହାଯାଏ, ଜୀବନ ଗୋଟିଏ ପରଂପରା। ଜୀବଂତ ବସ୍ତୁ ପ୍ରତିଦିନ ବଦଳିଯାଉଅଛି। ତଳିଠାରୁ ଗଛ ଭିନ୍ନ। ଶିଶୁଠାରୁ ଯୁବକର ପ୍ରଭେଦ ବହୁତ। ପଚିଶ ବର୍ଷ ପୂର୍ବେ ଆଂଭେମାନେ ଯାହା ଥିଲୁ, ଆଜି ତାହା ନାହୁଁ। ତଥାପି ଏହି ଜୀବଂତ ପରଂପରା ହେତୁ ତଳି ଓ ଗଛ ଏକ ବସ୍ତୁ। ଶିଶୁ,

ଯୁବକ ଓ ବୃଦ୍ଧ ଏକ ମାନବ। ବୃଦ୍ଧ, ବାଳକଠାରୁ ଶରୀରରେ ଭିନ୍ନ ହେଲେହେଁ, ବାଲ୍ୟ ବୟସର ସ୍ମୃତି ସଂସ୍କାର ତାହା ଭିତରେ ରହିଅଛି। ସେ ସେହି ସ୍ମୃତି ସଂସ୍କାରକୁ ମୋର ବୋଲି କହୁଅଛି। ଜୀବନରେ ପରଂପରା ନ ଥିଲେ ଏହା ସଂଭବ ହୁଅଂତା ନାଇ।

ଏହି ସମସ୍ତ ପରଂପରାର ମେରୁଦଂଡ ସ୍ୱରୂପ ଜୀବନରେ ଗୋଟିଏ ଆଦର୍ଶ ଥାଏ। ଜୀବନ ମୂଳରୁ ଶେଷ ପର୍ଯଂତ ସେହି ଆଦର୍ଶର ଅନୁକରଣ କରେ। ପ୍ରତ୍ୟେକ ଜୀବଂତ ବସ୍ତୁ ଜନ୍ମରୁ ମରଣ ପର୍ଯଂତ ନାନା ଉପାୟରେ, ନାନା କ୍ରିୟା ମଧ୍ୟରେ ସେହି ଏକ ଲକ୍ଷ୍ୟ ଆଡ଼କୁ ଚାଲିଥାଏ। ଏହି ଆଦର୍ଶ, ଏହି ଲକ୍ଷ୍ୟ ସଂପୂର୍ଣ ଲୋପ ପାଇଲେ ସେ ଜୀବନ ରହେ ନାଇ। ବୃକ୍ଷତ୍ୱ ପାଇବା ବୃକ୍ଷଜୀବନର ଆଦର୍ଶ। ମନୁଷ୍ୟ ସେହିପରି ମନୁଷ୍ୟତା ପାଇବାକୁ ସାରା ଜୀବନ ଉନ୍ମୁଖ ରହିଅଛି। ତଳିଟିଏ ଦେଖିଲେ ଜଣାପଡ଼େ, ସେ କଣ ହେବ। ବରଗଛର ତଳି କେବେ ଶାଳ ହୁଏ ନାଇ। ମନୁଷ୍ୟ ସଂବଂଧରେ ମଧ୍ୟ ସେହିପରି। ପୂର୍ଣ-ମନୁଷ୍ୟତାର ଧାରଣା ଯାହାର ଯାହା ହେଉ, ସେ ନିଜର ଆଦର୍ଶରେ ନିଜର କ୍ରିୟା ବିଧାନ କରି ଜୀବନ ଚଳାଉଥାଏ। ଅତଏବ, ମନେରଖିବାକୁ ହେବ, ଜୀବନରୂପ ଶକ୍ତି ସଂଗେ ଏହି ନୀତି, ଏହି ପରଂପରା ଓ ଏହି ଆଦର୍ଶ— ଏହି ତିନୋଟି ଭାବ ସଂଶ୍ଲିଷ୍ଟ ରହିଅଛି। ଏହି ତିନୋଟିକୁ ଛାଡ଼ିଦେଲେ, ଶରୀର ଗୋଟିଏ ଜଡ଼ ପିଂଡ; ଆଉ ସେଥିରେ ଜୀବନର ଲକ୍ଷଣ ନାଇ।

କେବଳ ଯେ ମନୁଷ୍ୟ, ପଶୁ, ପକ୍ଷୀ, ବୃକ୍ଷ, ଲତା ଆଦି ପ୍ରକୃତିର ଜୀବଂତ ବସ୍ତୁରେ ଏହି ଜୀବନ ଦେଖାଯାଏ, ତାହା ନୁହେ। ଯେଉଁଠାରେ ଏହି ନୀତି, ଏହି ପରଂପରା, ଏହି ଆଦର୍ଶ ଦେଖାଯାଏ, ସେଠାରେ ଜୀବନ ଅଛି, ବୁଝିବାକୁ ହେବ; ସେଠାରେ ଜୀବନର ଅଭ୍ୟୁଦୟ, ବିକାଶ ଓ ପରିବର୍ତ୍ତନ ଆଲୋଚନା କରିବାକୁ ହେବ। ଏହିପରି ଆଲୋଚନା କରି ବୈଜ୍ଞାନିକମାନେ ବ୍ୟକ୍ତିଗତ ଜୀବନ ସଂଗେ ସଂଗେ ବଂଶ ବା ପରିବାରଗତ, ସମାଜଗତ, ଧର୍ମଗତ ଓ ଜାତିଗତ ଜୀବନର ଅଭ୍ୟୁଦୟ, ବିକାଶ, କ୍ଷୟ ଓ ବିନାଶ ଦେଖଂତି; ଜୀବଂତ ପରଂପରାରେ ସେସବୁର ଅନୁଷ୍ଠାନ ଓ ବ୍ୟାପ୍ତି ଅନ୍ୱେଷଣ କରଂତି। ଏ ସମସ୍ତ ମଧ୍ୟରେ ଏକପ୍ରକାର ଜୀବନ-ନୀତି କାର୍ଯ କରୁଅଛି ସତ; ମାତ୍ର ପ୍ରତ୍ୟେକର ବ୍ୟକ୍ତିତ୍ୱ ଭିନ୍ନ ଭିନ୍ନ। ବ୍ୟକ୍ତି ସମାଜ ନୁହେ; ସମାଜ ଧର୍ମ ନୁହେ; ଧର୍ମ ନୀତି ନୁହେ; ତଥାପି ସମସ୍ତଂକର ଗୋଟିଏ ଗୋଟିଏ ସ୍ୱତଂତ୍ର ବ୍ୟକ୍ତିତ୍ୱ ଅଛି ଏବଂ ସେହି ବ୍ୟକ୍ତିତ୍ୱ ହିସାବରେ ଏ ସମସ୍ତେ ଏକ ବସ୍ତୁ।

ମନୁଷ୍ୟ ମରିଗଲେ ତାର ବ୍ୟକ୍ତିଗତ ପରଂପରା ଛିନ୍ନ ହୁଏ। ମୃତ୍ୟୁରେ ତାହାର ବ୍ୟକ୍ତିଗତ ଜୀବନ ସମାପ୍ତ ହୁଏ; କିଂତୁ ଏକ ବ୍ୟକ୍ତିର ମୃତ୍ୟୁରେ ବଂଶ ବା ପରିବାରର ବ୍ୟକ୍ତିତ୍ୱ ଓ ଜୀବନ-ପରଂପରା ନଷ୍ଟ ହୁଏ ନାଇ। ପରିବାରର

ବ୍ୟକ୍ତିତ୍ୱ ବଂଶ-ପରଂପରାରେ ଚାଲିଥାଏ। ବ୍ୟକ୍ତିଗତ ଜୀବନରେ ବୃଦ୍ଧ ଯେପରି ଯୌବନର ସୁଖ, ଦୁଃଖ, ସାଧୁତା, ଅପଚାରକୁ ନିଜର ବୋଲି ଅନୁଭବ କରେ, ପାରିବାରିକ ବ୍ୟକ୍ତିତ୍ୱ ଫଳରେ ଆଂଭେମାନେ ସେହିପରି ପୂର୍ବପୁରୁଷମାନଂକର ଗୌରବରେ ଗୌରବାନ୍ୱିତ ହେଉ। ଏହି ପାରିବାରିକ ବ୍ୟକ୍ତିତ୍ୱର ଜୀବଂତ ସ୍ମୃତି ପରଂପରା ହେତୁ ଆଜି ହୀନବୀର୍ଯ୍ୟ ହେଲେହେଁ, ମିବାରର ଶିଶୋଦୀୟ ରାଣା-ବଂଶୀୟମାନେ ଅଯାଚିତ ସମ୍ମାନ ଲାଭ କରଂତି। ପଦ୍ମିନୀ, ପ୍ରତାପାଦିଂକର ଜୀବଂତ ସ୍ମୃତି ସେ ପରିବାରର ବ୍ୟକ୍ତିତ୍ୱକୁ ଏତେ ଉନ୍ନତ କରିଅଛି।

ସେହିପରି ଗୋଟିଏ ପରିବାର ନଷ୍ଟ ହେଲେ ଜାତି ନଷ୍ଟ ହୁଏ ନାଇ। ଜାତୀୟ ବ୍ୟକ୍ତିତ୍ୱରେ ଜାତୀୟ ଜୀବନ ପରଂପରା ଚାଲିଥାଏ। ବ୍ୟକ୍ତି ଓ ପରିବାର ଘେନି ଜାତି ନିର୍ମିତ ସତ୍ୟ; କିଂତୁ ବ୍ୟକ୍ତିର ବ୍ୟକ୍ତିତ୍ୱ ଓ ପାରିବାରିକ ଜୀବନ-ପରଂପରାଠାରୁ ଜାତୀୟ ଜୀବନ ସ୍ୱତଂତ୍ର। ବ୍ୟକ୍ତି-ଜୀବନରେ ଯେପରି କ୍ରିୟା, ପରିବାର-ଜୀବନରେ ଯେପରି ବ୍ୟକ୍ତି, ଜାତୀୟ ଜୀବନରେ ପରିବାର ମଧ୍ୟ ସେହିପରି। ପରିବାର ଓ ବ୍ୟକ୍ତିମାନଂକ କ୍ରିୟାରେ ଜାତୀୟ ଜୀବନର ପରଂପରା ପ୍ରକଟିତ ହୁଏ; କିଂତୁ ଏହା ବୋଲି ବ୍ୟକ୍ତି ବା ପରିବାରବିଶେଷ ନଷ୍ଟ ହେଲେ ଜାତିର ଜୀବନ ନଷ୍ଟ ହୁଏ ନାଇ; ବରଂ ବ୍ୟକ୍ତି ଓ ପରିବାର ନିର୍ମମ ଭାବରେ ଆତ୍ମତ୍ୟାଗ କରି ଜାତୀୟ ଜୀବନକୁ ପୁଷ୍ଟ ଓ ବଳିଷ୍ଠ କରନ୍ତି। ତେଣୁ ଏହି ଜାତୀୟ ଜୀବନକୁ ଜାତିର ଲୋକ ଓ ପରିବାରମାନଂକର ସମୂହ ଜାତୀୟ ବ୍ୟକ୍ତିତ୍ୱରେ ଅନୁସଂଧାନ କରିବାକୁ ହେବ।

'ଆର୍ଯ୍ୟ ଜାତି' —ଏହି କଥାଟି ପୃଥିବୀରେ ବହୁ ପ୍ରାଚୀନ। ଏହି ନାମରେ ବୈଦିକ ଋଷି ସଂତତି ଓ ସେମାନଂକ ପ୍ରଭାବରେ ପ୍ରଭାବିତ ଭାରତୀୟମାନେ କେବଳ ଚିରଦିନ ପରିଚିତ ହୋଇଆସୁଥିଲେ। ଏବେ ପ୍ରାୟ ଅର୍ଦ୍ଧ-ଶତାବ୍ଦୀରୁ କିଛି ଉପର ହେବ, ପଂଡିତମାନେ ସ୍ଥିର କରୁଅଛଂତି, ଭାରତର ଆର୍ଯ୍ୟମାନେ ଯେଉଁ ଜାତି, ସ୍ପେନଠାରୁ ପୂର୍ବ-ଉପଦ୍ୱୀପ ପର୍ଯ୍ୟଂତ ଭୂଖଂଡର ସମସ୍ତ ଅଧିବାସୀମାନେ ସେହି ବଂଶରେ ଜନ୍ମ ହୋଇଅଛଂତି। ସେମାନେ କାରଣ ସ୍ୱରୂପ ପ୍ରମାଣ କରୁଛଂତି, ଏ ସମସ୍ତ ଦେଶ ଲୋକଂକର ଆକୃତି ଓ ଅବୟବମାନଂକର ଅସ୍ଥି ସଂସ୍ଥାନର ପରିପାଟୀ ଏକାପରି ଏବଂ ଏମାନଂକ ଭାଷାମାନଂକରେ କେତେକ ନିତ୍ୟ ବ୍ୟବହାର୍ଯ୍ୟ ଅତି ଆବଶ୍ୟକୀୟ ଶବ୍ଦମାନଂକର ମୂଳ ଅଭିନ୍ନ। ସେହି ପଂଡିତମାନେ ଏ ସମସ୍ତ ଦେଶର ଲୋକମାନଂକୁ ଏକ କକେଶୀୟ ବା ଆର୍ଯ୍ୟ ବୋଲି ନିର୍ଦ୍ଦେଶ କରୁଅଛଂତି।

ଭାଷାବିଜ୍ଞାନବିତ୍ ଓ ଜାତିତତ୍ତ୍ୱସଂଧିତ୍ସୁ ଐତିହାସିକ ପଂଡିତମାନଂକର ଏହିପରି ଯୁକ୍ତି ଓ ସିଦ୍ଧାଂତ ଅଭ୍ରାଂତ ହୋଇପାରେ; ତଥାପି ମସ୍ତକର ଅସ୍ଥିବିଧାନ ବା ଭାଷାର ମୂଳଶବ୍ଦ ଫେଡ଼ି ଦେଖିବାରେ ଜାତୀୟତା ନାଇ। ଏ ସମସ୍ତ ଦେଶର ଲୋକମାନଂକର ଆଦିପୁରୁଷ ଏକ, ଏ ସମସ୍ତଂକର ପରସ୍ପର ସହିତ ରକ୍ତସଂପର୍କ

ଅଛି, ଏତିକିରେ ସେମାନଂକର ଜାତୀୟ ବ୍ୟକ୍ତିତ୍ୱ ଏକ ବୋଲି କୁହାଯାଇ ନ ପାରେ। ଏପରି ଅବୟବ, ଆକୃତି ଓ ଭାଷାର ସାମଂଜସ୍ୟ ଜାତିର ଜଡ଼ପିଂଡମାତ୍ର। ଜୀବନରେ ଆଦର୍ଶ ଓ ପରଂପରା ସେଥିରେ ସର୍ବଦା ସର୍ବତୋଭାବରେ ଆବଦ୍ଧ ହୋଇ ରହି ନ ପାରେ। ଏକ ଜୀବଂତ ବୃକ୍ଷର ଶାଖା ବା ପତ୍ର ଅପର ବୃକ୍ଷର ଖାଦ୍ୟରୂପେ ତାହାର ଅଂଗ ବୃଦ୍ଧି କରିପାରେ, ତାହାର ଜୀବନରେ ନିଜ ଶକ୍ତି ମିଶାଇ ଦେଇପାରେ, ପଂଡିତମାନେ ବିଜ୍ଞାନ ବଳରେ ଏହା ସବୁ ଜାଣିପାରିବା ଅସଂଭବ ନୁହେ; କିଂତୁ ବିଚ୍ୟୁତ ପତ୍ର ଓ ଶାଖା ମୂଳ ବୃକ୍ଷର ଜୀବନ ସଂଗେ ସଂବଧ ହରାଇଲେ ଆଉ ସେ ବୃକ୍ଷର ଅଂଶ ବୋଲି ଗୃହୀତ ହୋଇ ନ ପାରେ; କିଂବା ଯେଉଁ ବୃକ୍ଷ ସେ ପତ୍ର ବା ଶାଖାରେ ପରିପୁଷ୍ଟ, ସେ କଦାପି ମୂଳ ବୃକ୍ଷ ସଂଗେ ଏକ ହେବ ନାଇ। ବୃକ୍ଷର ଜୀବନରେ ଯେପରି, ଜାତିର ଜୀବନରେ ସେହିପରି ଏ କଥା ସତ୍ୟ। ଭୌତିକ ବିଗ୍ରହ ବା ଜଡ଼ପିଂଡ ଜୀବନ ନୁହେ; କେବଳ ରକ୍ତ-ସଂପର୍କ ବଂଶପରଂପରା ନୁହେ କିଂବା ପିତୃପୁରୁଷ ଏକ ହେଲେହେଁ ସର୍ବଦା ଯେ ଜାତୀୟ ଜୀବନ ଏକ ହେବ, ଏହାର କୌଣସି କାରଣ ନାଇ।

ଜୀବନ ଗୋଟିଏ କ୍ରମବର୍ଦ୍ଧନଶୀଳ ନୀତି ବା ନିୟମ। ଚାରିଆଡ଼ୁ ସର୍ବଦା କେତେ ଶକ୍ତି, ସଂପର୍କ, ସଂସର୍ଗ, ସାହଚର୍ଯ ଏହି କ୍ରମବର୍ଦ୍ଧନର ବିକାଶ କରୁଅଛି। ଜୀବନ-ପରଂପରାରେ ପ୍ରତ୍ୟେକ ଅବସ୍ଥାର ପ୍ରଭାବ ଓ ଉପାଦାନରେ ପରବର୍ତ୍ତୀ ଅବସ୍ଥା ଗଠିତ ହେଉଅଛି। ଆଂଭେମାନେ ଆଜି ଯାହା ହୋଇଅଛୁଁ, ତାହା ଆଜି ଦିନକର କ୍ରିୟାର ଫଳ ନୁହେ। ଶୈଶବରୁ ଏପର୍ଯଂତ ଅବସ୍ଥା ପରେ ଅବସ୍ଥା କଟିଯାଇଅଛି ଏବଂ ଆଂଭର ବର୍ତ୍ତମାନ ଅବସ୍ଥାରେ ସମସ୍ତ ଅବସ୍ଥାର ସଂସ୍କାର ଓ ଫଳ ରହିଅଛି। କେତେ ଉପଦେଶ, କେତେ ତାଡ଼ନା, କେତେ ଲକ୍ଷିତ ଅଲକ୍ଷିତ ସଂସର୍ଗ, କେତେ ଆତ୍ମଚିଂତା, କେତେ ଅଭ୍ୟାସ ଆଂଭ ଜୀବନକୁ ଗଢ଼ିବାରେ ଲାଗିଚି, ତାହାର କିଏ ଗଣନା କରିପାରିବ? ଆଂଭେ ଯଦି ଆଜି ସଂପୂର୍ଣ୍ଣ ଅନ୍ୟ ଭାବରେ ଭାବାନ୍ୱିତ ହୋଇ ଅନ୍ୟ ସମାଜ ଆଶ୍ରୟ କରି, ଅନ୍ୟ ସଂସ୍କୃତି ଗ୍ରହଣ କରି, ଅନ୍ୟ ଦେଶରେ ବସବାସ କରି, ନିଜ ଜୀବନର ଏ ସମସ୍ତ ଅଭ୍ୟାସର ଫଳରେ ଅନାସ୍ଥା ଓ ଅନାଦର କରୁ ଏସବୁ ଭୁଲିଯାଇ, କେତେକ ବର୍ଷ ପରେ ଭିନ୍ନ ପ୍ରଭାବରେ ଭିନ୍ନ ଜାତିର ଲୋକରେ ପରିଣତ ହେଉଁ, ତେବେ ଆଂଭ ବ୍ୟକ୍ତିତ୍ୱ-ପରଂପରା ଛିନ୍ନ ହେଲା। ବସ୍ତୁତଃ ଆଂଭେ ଅନ୍ୟ ବ୍ୟକ୍ତିରେ ପରିଣତ ହେଲୁଁ।

ବ୍ୟକ୍ତିର ଜୀବନ ଅଳ୍ପକାଳସ୍ଥାୟୀ। ସେଥିପାଇଁ ସେଥିରେ ଏପରି ବ୍ୟକ୍ତିତ୍ୱଭେଦ ସାଧାରଣତଃ ସଂଭବ ହୁଏ ନାଇ। ମାତ୍ର ଜାତୀୟ ଜୀବନରେ ଏ କଥା ଲକ୍ଷ୍ୟ କରିବା ବିଶେଷ ଆୟାସସାଧ ନୁହେ। ଗୋଟିଏ ଜାତିର ଲୋକମାନେ କୌଣସି ଏକ ଦେଶର ଜଳବାୟୁ, ବେଷ୍ଟନୀ ଓ ପ୍ରଭାବରେ ବହୁ ଦିନ ବଢ଼ିଲେ,

ସେହି ଦେଶର ପ୍ରକୃତି ଅନୁସାରେ ସେ ଜାତିର ଗୋଟିଏ ପ୍ରାକୃତିକ ଜୀବନ-ପରଂପରା ଜାତ ହେବା ସ୍ୱାଭାବିକ। ମାତ୍ର ଘଟଣାକ୍ରମେ ସେହି ଜାତି ଭିନ୍ନ ଜାତି ବା ବ୍ୟକ୍ତିବିଶେଷର ଶକ୍ତି ବା ଧର୍ମରେ ନିଜ ପ୍ରାକୃତିକ ଅନୁଷ୍ଠାନମାନଂକର ପରଂପରା ସବୁ ଭୁଲିଯାଇ, ସର୍ବତୋଭାବରେ ନବ ପ୍ରଭାବିତ ହେଲେ, ତାହାର ଜାତୀୟ ଜୀବନ ଭିନ୍ନ ରୂପ ଧାରଣ କରେ। ପୃଥିବୀରେ ବହୁଜାତିର ଜୀବନ ଏହିପରି କାଳେ କାଳେ ବୈଦେଶିକ ଓ ଭିନ୍ନ ଧର୍ମ ଆଦିର ପ୍ରଭାବରେ ଅନ୍ୟରୂପ ହୋଇଅଛି। ସେମାନଂକର ଜାତୀୟ ଜୀବନର ସେ ପରଂପରା ଆଉ ନାଇ; କିଂତୁ ଆର୍ଯ୍ୟ ଜୀବନର ପ୍ରାକୃତିକ ବର୍ଦ୍ଧନ ଭାରତର ଏକ ଆଦର୍ଶରେ ଚିରକାଳ ନିୟତ ଓ ବିକାଶପ୍ରାପ୍ତ ହୋଇ ଆସିଅଛି। ଭାରତ ପ୍ରକୃତିରେ ଯେ ସମାଜ, ସଭ୍ୟତା, ରୁଚି, ଧର୍ମ, ଅନୁଷ୍ଠାନ – ଏକ କଥାରେ ଯେ ଜାତୀୟତା କାଳକ୍ରମେ ସ୍ୱାଭାବିକ ବିକାଶରେ ଗଠିତ ହୋଇଅଛି, ତାହାର ମୂଳନୀତି ଓ ଆଦର୍ଶ ଆଦିମକାଳରୁ ଆଜିଯାଏଁ ଅନବଚ୍ଛିନ୍ନ କର୍ମଧାରା ମଧ୍ୟରେ ସେହିପରି ଅପରିବର୍ତ୍ତିତ ରହିଅଛି। ଭାରତରେ ଯେ ସନାତନ ଆର୍ଯ୍ୟ ଆଦର୍ଶ ଅଛି, ପଂଡିତମାନେ ଆଉ ଯେଉଁମାନଂକୁ ଆର୍ଯ୍ୟ କୁଳର ବୋଲି କହୁଅଛଂତି, ସେମାନଂକ ମଧ୍ୟରେ ତାହା ନାହିଁ। ସେମାନଂକ ଜାତୀୟ ବ୍ୟକ୍ତିତ୍ୱ ବୈଦେଶିକ ପ୍ରଭାବରେ ସଂପୂର୍ଣ୍ଣ ଭିନ୍ନ ରୂପ ଧାରଣ କରିଅଛି। ଏଥିରେ ଅବଶ୍ୟ କୌଣସି ଦେଶର ବା ଜାତିର ସଭ୍ୟତା ପ୍ରତି ଅନାସ୍ଥା ବା ଅନାଦର ପ୍ରକାଶ କରାଯାଉ ନାଇ। କାହାକୁ ପୁରାତନ ବା ନୂତନ ବୋଲି ଆସ୍ଥା ଆଦରରେ ଇତରବିଶେଷ କହିବା ମଧ ଯୁକ୍ତିଯୁକ୍ତ ନୁହେ; କିଂତୁ ଏତିକି ମାତ୍ର କହିବା ଅଭିପ୍ରାୟ, ମୌଳିକ ଆର୍ଯ୍ୟ ସଭ୍ୟତା କେବଳ ଭାରତରେ ଅନୁସଂଧାନ କରିବା ଉଚିତ; ଅନ୍ୟତ୍ର ତାହା ମିଳିବ ନାଇ। ଅନ୍ୟ ଦେଶର ସଭ୍ୟତାର ଆଦର୍ଶ ଓ ଗତି ବାରଂବାର ପରିବର୍ତ୍ତିତ ହୋଇଅଛି; ଭାରତରେ ତାହା ହୋଇନାଇ।

ଇତିହାସରୁ ଜଣାଯାଏ, ପୃଥିବୀରେ ବହୁ ପ୍ରାଚୀନ ଜାତି ଲୋପପାଇଅଛଂତି। ମିଶର, ଫିନିସିଆ, ବାବିଲନ୍, ଆସିରିଆ, ଚାଲ୍‌ଡ଼ିଆ, କାର୍ଥେଜ୍, ବକ୍ତ୍ରିୟା, ପଲ୍ଲବ, ପାରସ୍ୟ ଓ ଆମେରିକାର ପୀରୁ, ମେକ୍‌ସିକୋର ପ୍ରାଚୀନ ସଭ୍ୟତା ଅତି ଉନ୍ନତ ଥିବାର ପ୍ରମାଣ ମିଳେ। ଏ ସବୁ ଦେଶର ସଭ୍ୟତା ଓ ବ୍ୟକ୍ତିତ୍ୱ ଦିନେ ମାନବଜାତିର ସମୂହ ଦୀପ୍ତି ଓ ବିକାଶରେ ଯଥେଷ୍ଟ ସାହାଯ୍ୟ କରିଥିଲା; ମାତ୍ର ଆଜି ସେମାନଂକର ସେ ପ୍ରାଚୀନ ସଭ୍ୟତାର ଚିହ୍ନ ନାଇ। ସ୍ଥଳବିଶେଷରେ ସେହିସବୁ ଦେଶ ଓ ଜାତିର ନାମ-ଧାମ ପର୍ଯ୍ୟଂତ ଐତିହାସିକ ଅନୁସଂଧାନର ଅପେକ୍ଷା କରୁଅଛି। ପଂଡିତମାନେ ନାନା ଶିଳା, ସେତୁ, ମଂଦିର, କବର, ମୁଦ୍ରା, ଶାସନ, ଶିଳାଲିପି ପ୍ରଭୃତି ଅନ୍ୱେଷଣ ଓ ଆଲୋଚନା କରି ସେମାନଂକର ପ୍ରାଚୀନ ସଭ୍ୟତାର କଥା ବାହାର କରୁଅଛଂତି। ସେ ସବୁ ଦେଶରେ ଭୂମି ସେହିପରି ପଡ଼ିଅଛି। ପ୍ରକୃତି ଇତରବିଶେଷ ପରିମାଣରେ ସେହିପରି ଉନ୍ମୁକ୍ତ

ରହିଅଛି; କିଂତୁ ସେ ପୁରାଣ ଗୌରବ, ସେ ଅତୀତ ଜାତୀୟତାକୁ ଆଂଭର ବୋଲି ଗର୍ବ କରିବାକୁ ସେ ଦେଶରେ କେହି ନାହାଂତି। ଦେଶର ଅଧିବାସୀମାନେ ବଂଶ-ପରଂପରାରେ ସେ ଜାତୀୟ ବିଭବ ବହନ କରୁନାହାଂତି। କିଂବଦଂତୀ ଓ କଥା ପରଂପରାରେ ଜାତୀୟ ସ୍ମୃତି ପୁରୁଷାନୁକ୍ରମେ ଅଲକ୍ଷିତ ଭାବରେ ପ୍ରଚାରିତ ହୁଏ; ମାତ୍ର ସେ ପୁରାଣ ବିଶାଳ ଜାତୀୟତାର ସ୍ମୃତି ଆଜି ସେ ସବୁ ଦେଶର କିଂବଦଂତୀରେ ସୁଦ୍ଧା ଶୁଣାଯାଉନାଇ।

ପ୍ରାଚୀନ ମିଶରବାସୀ ରାଜାମାନଂକ କବର ଉପରେ ଯେଉଁସବୁ ତୁମୁଳ ମହାଶିଳାସ୍ତୂପ (ପୀରାମିଡ଼) ଗଢ଼ିଥିଲେ, ତାହା ଆଜି ସଭ୍ୟତମ ମାନବର ବିସ୍ମୟ ଜନ୍ମାଉଅଛି। ସେହି ପ୍ରାଚୀନ ମିଶରୀୟମାନେ ମନୁଷ୍ୟ ଓ ପଶୁପକ୍ଷୀର ଶବସବୁ କି ମସଲାରେ କିପରି ରଖିଯାଇଥିଲେ ଯେ, ତାହା ହଜାର ହଜାର ବର୍ଷ ପରେ ସୁଦ୍ଧା ଆଜି ଅବିକଳ ରହିଅଛି; କିଂତୁ ଆଧୁନିକ ମିଶରବାସୀ ସେମାନଂକର ପୂର୍ବପୁରୁଷମାନଂକ ସେ କଳାକୌଶଳ ମନେ ରଖିବା ଦୂରେ ଥାଉ, ସେ କୀର୍ତିକାହାଣୀ ପର୍ଯନ୍ତ ଭୁଲିଯାଇଅଛଂତି। ପ୍ରାୟ ହଜାର ବର୍ଷ ପୂର୍ବେ ମିଶରବାସୀ ମୁସଲମାନଂକଦ୍ୱାରା ବିଜିତ ହୋଇ ମୁସଲମାନ ଧର୍ମରେ ଦୀକ୍ଷିତ ହେଲେ। ସେହି ଦିନଠାରୁ ସେମାନଂକ ଜାତୀୟ ଜୀବନର ପୂର୍ବ ପରଂପରା ଛିନ୍ନ ହୋଇଅଛି। ସେମାନେ ସର୍ବତୋଭାବରେ ମହମ୍ମଦୀୟ ଆଦର୍ଶରେ ପ୍ରଭାବିତ ହୋଇଅଛଂତି। ମିଶରର ଜାତୀୟତା ଆଜି ବହୁ ଉନ୍ନତ ହୋଇପାରେ; ମାତ୍ର ସେ ଉନ୍ନତିରେ ପ୍ରାଚୀନ ମିଶରର ପରଂପରା ଅଛି ବୋଲି କୁହାଯିବନାଇ।

ସମଗ୍ର ଇଉରୋପର ଅବସ୍ଥା ମଧ୍ୟ ସେହିପରି। ଦିନେ ପ୍ରାଚୀନ ଗ୍ରୀସ୍‌ଦେଶୀୟ ଆଦର୍ଶରେ ସେ ସମସ୍ତ ଭୂଖଂଡ ବ୍ୟାପ୍ତ ହୋଇଥିଲା; କିଂତୁ ସେ ଆଦର୍ଶ ଆଜି ଇଉରୋପରେ ନାଇ। ଖ୍ରୀଷ୍ଟଧର୍ମର ବ୍ୟାପକ ପ୍ଲାବନରେ ସକ୍ରେଟିସ୍, ପ୍ଲେଟୋ, ଆରିଷ୍ଟଟଲ୍ ପ୍ରଭୃତି ପ୍ରାଚୀନ ଗ୍ରୀକ୍ ଦାର୍ଶନିକମାନଂକ ସମୟରେ ଜାତୀୟ ଆଦର୍ଶ ଇଉରୋପରୁ ଅଂତର୍ହିତ ହୋଇଯାଇଅଛି। ପ୍ରାଚୀନ ସ୍ପାର୍ଟାର ସେ ସରଳ ଜୀବନ, ଏଥେନ୍‌ସର ସେ ମହତ୍ତ୍ୱ ଓ ମୌଳିକତା, ପ୍ଲେଟୋଂକ ପ୍ରଚାରିତ ରାଜତଂତ୍ର ଓ ଶିକ୍ଷାବିଧାନର ଆଦର୍ଶ ପ୍ରଭୃତିରେ ଗଠିତ ଇଉରୋପର ଜାତୀୟ ଜୀବନ ଆଉ ପରଂପରାରେ ଜୀବଂତ ରହି ନାଇ। ନବ ଧର୍ମଦୀକ୍ଷା ସଂଗେ ଭାବ ବିପର୍ଯୟ, ଗଥ୍, ଭାଂଡାଲ ପ୍ରଭୃତି ବିଜେତୃ ଜାତିମାନଂକର ପ୍ରଭାବ, ଶେଷରେ ଟିଉଟନ୍‌ମାନଂକର ନବ ଜାତୀୟ ଦୀପ୍ତି ଇଉରୋପର ପ୍ରାଚୀନ ସଭ୍ୟତାର ପରଂପରା ନଷ୍ଟ କରିଅଛି। ଜୀବନର ସେ ପ୍ରାକୃତିକ ବିକାଶ ବର୍ଧିଷ୍ଣୁ ଭାବରେ ଆଜି ଇଉରୋପର ଜାତୀୟ ଆଦର୍ଶକୁ ପ୍ରଭାବିତ କରୁନାଇ।

କଳ୍ପନା କରାଯାଉ, ଗୋଟିଏ ଭୂମିରେ ଗୋଟିଏ ଗଛ ଉଠିଅଛି। ସେ ଗଛଟି ସେ ଭୂମିରୁ ରସ ଗ୍ରହଣ କରି, ସେହି ଜଳବାୟୁରେ ବଢ଼ି, ସେହି

ଭୂମିର ପ୍ରାକୃତିକ ସୁବିଧା-ଅସୁବିଧାରେ ପଡ଼ି ନିଜର ଜୀବନ ରଖିଅଛି। କୌଣସି ଲୋକ ନିଜ ରୁଚି ବା ବ୍ୟବହାର ନିମଂତେ ସେ ବୃକ୍ଷ ନଷ୍ଟ କରି, ସେହି ସ୍ଥାନରେ ଅନ୍ୟ ଜଳବାୟୁରେ ବଢୁଥିବା ଗଛର ମଂଞ୍ଜି ଓ ଡାଳ ଆଣି ପୋତିଲେ; ସେଠାରେ ଗୋଟିଏ ନୂତନ ବୃକ୍ଷ ହେଲା। ଏହି ନୂତନ ବୃକ୍ଷଟି ହୃଷ୍ଟପୁଷ୍ଟ ହୋଇ ବଢ଼ିପାରେ; କିଂତୁ ତାହା ସେ ଭୂମିର ସ୍ୱାଭାବିକ ବୃକ୍ଷ ନୁହେ। ଏ ନବ ବୃକ୍ଷରେ ସ୍ୱାଭାବିକ ବୃକ୍ଷର ପ୍ରକୃତି ଓ ପ୍ରାଚୀନତା ନାଇ। ଦେଶ-ବିଦେଶର ସଭ୍ୟତାକୁ ସେହିପରି ଗୋଟିଏ ବୃକ୍ଷପରି କଳ୍ପନା କରାଯାଉ। ସେହି ହିସାବରେ ପୃଥିବୀର ଅନ୍ୟାନ୍ୟ ଦେଶମାନଙ୍କର ସଭ୍ୟତା ଅତି ଉନ୍ନତ ହୋଇପାରେ; କିନ୍ତୁ ସେ ସବୁ ନବରୋପିତ ସଭ୍ୟତା ସେ ଦେଶମାନଂକର ମୌଳିକ ସଭ୍ୟତା ନୁହେ। ଆର୍ଯ୍ୟ-ସଭ୍ୟତାର ପ୍ରକୃତି, ଆଦର୍ଶ, ବିକାଶ ଆଜି ଇଉରୋପ କିଂବା ପାରସ୍ୟରେ ମିଳିବ ନାଇ। ସେ ସବୁ ଦେଶରେ ଯଦି କେବେ ଆର୍ଯ୍ୟ-ସଭ୍ୟତା ଥିଲା, ତାହା ଆଜି ନାଇ। ସେ ଭୂମିରେ ନବ ସଭ୍ୟତାର ବୃକ୍ଷ ରୋପିତ ହୋଇଅଛି।

କିଂତୁ ଭାରତର ଜାତୀୟ ସଭ୍ୟତାର ଉତ୍ପତ୍ତି ଭାରତରେ; ବିକାଶ ଭାରତରେ। ଭାରତବାସୀ ଚିରକାଳ ଏକ ଜାତୀୟ ଆଦର୍ଶରେ ଜୀବନ ଚଳାଉଅଛଂତି। କାଳବଶରେ, ଘଟଣା-ପ୍ରଭାବରେ, ଭାରତର ଧର୍ମ, ସମାଜ ନାନା ଶାଖା-ପ୍ରଶାଖାରେ ବିଭକ୍ତ ହୋଇଅଛି, କିଂତୁ ସେ ସବୁ ସନାତନ ଆର୍ଯ୍ୟଧର୍ମ ଓ ବେଦପ୍ରଚାରିତ ଆର୍ଯ୍ୟନୀତିର ଭିନ୍ନ ଭିନ୍ନ ବିଭାବ ବିକାଶର ଫଳ। ଶଂକର, ରାମାନୁଜ, ଚୈତନ୍ୟ ପ୍ରଭୃତି କେତେ ମନୀଷୀ ଏ ଭାରତଭୂମିରେ ଧର୍ମପ୍ରଚାର କରିଅଛଂତି, ସଂପ୍ରଦାୟ ଗଠନ କରିଅଛଂତି; କିଂତୁ ସମସ୍ତେ ବେଦର ତତ୍ତ୍ୱ ଭିନ୍ନ ଭିନ୍ନ ଭାବରେ ବ୍ୟାଖ୍ୟା କରିଅଛଂତି ମାତ୍ର। ସେମାନଂକ ଧର୍ମମତରେ ବିରୋଧ ନାଇ, ଭାରତର ଧର୍ମ-ସଂପ୍ରଦାୟମାନଂକ ମଧ୍ୟରେ ସ୍ଥାୟୀ ବିଦ୍ୱେଷ ବା ରକ୍ତପାତ କେବେ ଦେଖାଯାଇ ନାଇ। ଅନଂତ ଶାଖା-ପ୍ରଶାଖାରେ ପରିଣତ ହୋଇ ଆର୍ଯ୍ୟଧର୍ମ ଆଜି ସାର୍ବଜନୀନ, ସର୍ବବାଦସମ୍ମତ ହୋଇଅଛି। ପୃଥିବୀର ସମସ୍ତ ପ୍ରଚାରିତ ଧର୍ମର ନୀତି ନାନା ଭାବରେ ସନାତନ ଆର୍ଯ୍ୟ-ଧର୍ମର ଅଂଗୀଭୂତ ରହିଅଛି। ଆର୍ଯ୍ୟର ଈଶ୍ୱର କହୁଅଛଂତି, "ଯେ ଯଥା ମାଂ ପ୍ରପଦ୍ୟନ୍ତେ, ତାଂ ତଥୈବ ଭଜାମ୍ୟହଂ।" "ସର୍ବ ଧର୍ମାନ୍ ପରିତ୍ୟଜ୍ୟ ମାମେକଂ ଶରଣଂ ବ୍ରଜ।" ଅର୍ଥାତ୍, "ମତେ ଯେ ଯେପରି ଉପାସନା କରିବେ, ମୁଁ ତାଂକୁ ସେହିପରି ଗ୍ରହଣ କରିବି। ସମସ୍ତ ଧର୍ମ ଛାଡ଼ି କେବଳ ମୋଠାରେ ଶରଣ ନିଅ।"

ଆର୍ଯ୍ୟ ସମାଜ ମଧ୍ୟ ସେହିପରି ଯୁଗେ-ଯୁଗେ ନାନା ପରିବର୍ତ୍ତନ ଭୋଗିଅଛି। ନାନା ପ୍ରଭାବରେ ପ୍ରଭାବିତ ହୋଇ ସଂକୋଚରେ ଆତ୍ମରକ୍ଷା କରୁ କରୁ ସମାଜର କେତେ ବିକାର ମଧ୍ୟ ଘଟିଅଛି, କିଂତୁ ସେ ସମସ୍ତ ପ୍ରଭାବ,

ସମସ୍ତ ବିକାର ମଧ୍ୟରେ ସନାତନ ମୌଳିକ ଆର୍ଯ୍ୟ ନୀତି ଏବେ ସୁଦ୍ଧା ସ୍ପଷ୍ଟ। ଆଜି ମଧ୍ୟ ଆର୍ଯ୍ୟର ବିଶ୍ୱାସ, ସମାଜର ଜାତିମାନେ ଆଦିମଯୁଗରେ ସେହି ପରମାତ୍ମା ବିଶ୍ୱରୂପୀ ବିରାଟପୁରୁଷଂକ ଶରୀରରୁ ଜାତ ହୋଇଥିଲେ। ଆଜି ମଧ୍ୟ ଆର୍ଯ୍ୟ ସଂତାନ ବେଦ ସ୍ମରଣ କରି କହେ, "ବ୍ରାହ୍ମଣୋଽସ୍ୟ ମୁଖମାସୀତ୍; ବାହୁରାଜନ୍ୟଃ କୃତଃ, ଉରୁସ୍ତଦସ୍ୟ ଯଦ୍‌ବୈଶ୍ୟଃ-ପଦଭ୍ୟାଂ ଶୂଦ୍ରୋଽଜାୟତ।" ଅର୍ଥାତ୍, ବ୍ରାହ୍ମଣ ଏହି ବିରାଟପୁରୁଷଂକ ମୁଖରୂପୀ, କ୍ଷତ୍ରିୟ ଏହାଂକର ବାହୁ, ବୈଶ୍ୟ ଉରୁ ଏବଂ ଶୂଦ୍ର ଏହାଂକ ପାଦରୁ ଜାତ।

ଭାରତ ବିଦେଶୀମାନଂକଦ୍ୱାରା ବାରଂବାର ବିଜିତ ହୋଇଅଛି ଏବଂ ଫଳରେ ରାଜନୀତି ନାନା ବାହ୍ୟ ପ୍ରଭାବରେ ତଦନୁରୂପ ପ୍ରଭାବିତ ହେବାର କଥା। ଘଟଣାବଶରେ ଭାରତର ଏହି ରାଜନୀତି କେତେ ପରିବର୍ତ୍ତନର ମଧ୍ୟଦେଇ ଆସିଅଛି ସତ୍ୟ; କିଂତୁ ଅଦ୍ୟାପି ସେହି ଶ୍ରୁତି, ସ୍ମୃତି, ପୁରାଣବର୍ଣ୍ଣିତ ଭାବ ରାଜନୀତିକୁ ମଧ୍ୟ ଜୀବଂତ କରିଚି। ସମସ୍ତ ପ୍ରଭାବ ଓ ପରିବର୍ତ୍ତନ ଭେଦ କରି ଆଜି ମଧ୍ୟ ଆର୍ଯ୍ୟ ସ୍ମରଣ କରେ, "ଅଷ୍ଟାନାଂ ଲୋକପାଳାନାଂ ମାତ୍ରାଭିନିର୍ମିତୋ ନୃପଃ", ଅର୍ଥାତ୍, ଅଷ୍ଟଲୋକପାଳମାନଂକ ଅଂଶରେ ରାଜା ନିର୍ମିତ ହୋଇଅଛଂତି। ଯେଉଁ ଦେବତାମାନେ ଲୋକ ପାଳନ କରଂତି, ସେହିମାନଂକ ଅଂଶରେ ନିର୍ମିତ ନ ହେଲେ କେହି ରାଜପଦର ଉପଯୁକ୍ତ ନୁହେ। ସେଥିପାଇଁ ଆଜି ମଧ୍ୟ ଭାରତୀୟ ରାଜାର ବିଶ୍ୱାସ; ତାର ରାଜତ୍ୱ ପ୍ରଜାରଂଜନ ନିମଂତେ— ନିଜର ଭୋଗବିଳାସ ପାଇଁ ନୁହେ। ଏ ସଂସାରରେ 'ଚତୂର୍ଣ ମାଶ୍ରମାଣାଂ ଚ ଧର୍ମସ୍ୟ ପ୍ରତିଭୂଃ"; ଅର୍ଥାତ୍, ସେ ସବୁ ଅବସ୍ଥାରେ ଥିବା ଲୋକମାନଙ୍କର ଧର୍ମ-କର୍ମ ରକ୍ଷା ନିମଂତେ ଯେପରି କି ଏ ଜଗତ୍‌ରେ ଗୋଟିଏ ନ୍ୟାସୀ। ଏହି ଧର୍ମ ରକ୍ଷା କରିବାପାଇଁ କେବଳ ଜଗତ୍‌ରେ ତାହାର ରାଜତ୍ୱ।

କାଳଗତିରେ ଭାରତର ଏହି ଆର୍ଯ୍ୟସଭ୍ୟତା ଅନଂତ ଶାଖା-ପ୍ରଶାଖାରେ ବିଭକ୍ତ ହୋଇଅଛି; ଭିନ୍ନ ଭିନ୍ନ ବିଭାଗରେ ଆର୍ଯ୍ୟଜୀବନର କ୍ରମବିକାଶ ଘଟିଅଛି; ବେଳେବେଳେ ବାହ୍ୟ ପ୍ରଭାବରୁ ଆତ୍ମସଂକୋଚନ ଫଳରେ ବିକାର ମଧ୍ୟ ଦେଖାଦେଇଅଛି; କିଂତୁ ସମସ୍ତ ଶାଖା, ସମସ୍ତ ବିଭାବ, ଏପରି କି ସମସ୍ତ ବିକାର ମଧ୍ୟ, ଆର୍ଯ୍ୟସଭ୍ୟତାର ବ୍ୟକ୍ତିତ୍ୱ ଓ ଜୀବନ ନୀତିରେ ସାହାଯ୍ୟ ମାତ୍ର କରିଅଛଂତି; କୌଣସି ଶାଖା, ବିଭାବାଦିରେ ଆର୍ଯ୍ୟଜୀବନର ମୂଳପିଂଡ ଓ ସନାତନ ଆଦର୍ଶ ବିଲୟ ପାଇ ନାଇ। କାଳଗତିରେ ଜୀବନ ଅନନ୍ତ ବିଭାବ ଓ ଆଂଶିକ ବିକୃତିରେ ପରିପୁଷ୍ଟ ଓ ସାବୟବ ହୋଇଅଛି। ମାତ୍ର ଏ ସମସ୍ତ ପରିପୁଷ୍ଟି ଓ ସମସ୍ତ ଅବୟବ-ବିନ୍ୟାସ ମଧ୍ୟରେ ଭାରତୀୟର ଏକ ଜାତୀୟ ପରଂପରା, ଏକ ମୌଳିକତାର ଅଭ୍ୟୁଦୟ ଏବଂ ଏକ ଜାତୀୟ ଆଦର୍ଶର କ୍ରମବିକାଶ ସ୍ପଷ୍ଟ ଦେଖାଯିବ। ସହସ୍ର ବର୍ଷ ମଧ୍ୟରେ ଜାତୀୟ ଜୀବନ ନାନା

ପ୍ରଭାବ ଭୋଗିଅଛି; ତଥାପି ସେହି ଅନନ୍ୟସାଧାରଣ ମୌଳିକତା ଫଳରେ ଭାରତୀୟ ଆଜି ଗୋତ୍ର, ପ୍ରବର ନାମରେ ନିଜର ପରିଚୟ ଦିଏ; ଅଜ୍ଞାତ କାଳର ପିତୃପୁରୁଷଂକ ସଂଗେ ସଂପର୍କ ସ୍ଥାପନ କରି ଆପଣାକୁ ଧନ୍ୟମନେକରେ। ସେହି ବଳିଷ୍ଠ ମୌଳିକତା ଓ ସନାତନ ଜାତୀୟ ଆଦର୍ଶରେ ପ୍ରାଣିତ ହୋଇ, ଆର୍ଯ୍ୟସଂତାନ ଆଜି ମଧ୍ୟ ପିତୃପିତାମହଂକ ତର୍ପଣବେଳେ କହେ, "ସୋମପାଃ ପିତରସ୍ତୃପ୍ୟତାଂ", "ବର୍ହିଷଦଃ ପିତରସ୍ତୃପ୍ୟତାଂ", ଅଗ୍ନିଷ୍ୱାତ୍ତାଃ ପିତରସ୍ତୃପ୍ୟତାଂ।" ଅର୍ଥାତ୍, ସୋମପାନକାରୀ ପିତୃମାନେ ତୃପ୍ତ ହୁଅଂତୁ; ଅଗ୍ନି-ଉପାସକ ପିତୃମାନେ ତୃପ୍ତ ହୁଅଂତୁ; ଯଜ୍ଞ ହୋମ କରୁଥିବା ପିତୃମାନେ ତୃପ୍ତ ହୁଅଂତୁ। ବୈଦିକ ତଥା ପ୍ରାଗ୍‌ବୈଦିକ ଯୁଗର ଏହି ଆଦିମ ସ୍ମୃତି, ଆର୍ଯ୍ୟଜୀବନର ଏହି ମହା ପରଂପରା ଭାରତରେ ଆର୍ଯ୍ୟର ସନାତନତ୍ୱ ପ୍ରତିଷ୍ଠିତ ରଖିଅଛି। ଭାରତୀୟ ଆଜି ଯାହା ହେଉ— ତାର ପ୍ରାଣର ଆହ୍ଲାଦକର ବିଶ୍ୱାସ ଏହି ଯେ, ସେହି ସୋମପା, ଯାଜ୍ଞିକ, ଅଗ୍ନିହୋତ୍ରୀ ପିତୃପୁରୁଷମାନେ ଆଜି ତାର ତର୍ପଣ-ଜଳ ପାନ କରି ସଂତୋଷ ଲଭୁଅଛଂତି— ସୁଦୂରଦେଶରୁ ତାକୁ ଆଶୀର୍ବାଦ କରୁଅଛଂତି ଏବଂ ତାହାକୁ ଦେଖି ନିଜର ବଂଶାବତଂସ ବୋଲି ଅହଂକାର କରୁଅଛଂତି। ପୃଥିବୀରେ ଆଉ ଯେ ଆର୍ଯ୍ୟରକ୍ତ-ପ୍ରସୂତ ଜାତିର କଥା କହ, ଜୀବନର ଏ ପ୍ରାଚୀନତା— ଏ ସ୍ୱାଭାବିକ ବିକାଶ— ଏ ମେରୁଦଣ୍ଡ— ଏ ସନାତନତ୍ୱ କାହାର ଅଛି ?

ଆର୍ଯ୍ୟର ଜୀବନବିକାଶ ସନାତନ; ଅର୍ଥାତ୍ ସର୍ବଦା ଏହା ପ୍ରାକୃତିକ ବେଷ୍ଟନୀରୁ ନୂତନ ନୂତନ ଉପାଦାନ ସଂଗ୍ରହ କରି, ଆଦର୍ଶ ଅନୁସରଣରେ ନିଜର ଅଭାବ ଓ ଆକାଙ୍‌କ୍ଷା ପୂର୍ଣ୍ଣ କରୁଅଛି। ଏହା ମୂଳରୁ ଏକ ଥିଲେ ମଧ୍ୟ, ପ୍ରତିଦିନ ନୂତନ ବିଭାବ, ନୂତନ ଅବୟବରେ ପୁଷ୍ଟ ଓ ବର୍ଦ୍ଧିତ ହେଉଅଛି। ଆର୍ଯ୍ୟଧର୍ମ ଭାରତର ପ୍ରକୃତିରେ ଜାତ ଏବଂ ଭାରତରେ ନିଜର ଆତ୍ମବିକାଶ କରିବାରେ ପୁଷ୍ଟ; ତେଣୁ ଏହା ସନାତନ ଓ ମୌଳିକ। ଏଥିପାଇଁ ଏଥିରେ ପୃଥିବୀର ସବୁ ପ୍ରକାର ସଭ୍ୟତା ଓ ସବୁ ପ୍ରକାର ଧର୍ମ, ମତବାଦ କାଳକ୍ରମେ ବିଭାବରୂପେ ବିକାଶ ପାଇଅଛି। ଜୀବନର ସମୂହ ବିକାଶରେ କୌଣସି ବିଭାବର ଯଥେଚ୍ଛାଚାର ନାଇଁ। ପ୍ରଥମେ ସବୁଠାରେ ଜାତିର ମୌଳିକ ଓ ସନାତନ ଜୀବନ ବିକାଶ ପାଏ; ସେଥିରେ ଗୋଟିଏ ପରଂପରା ଫୁଟିଉଠେ; କିଂତୁ କୌଣସି ବ୍ୟକ୍ତିର ବା ଭାବାଂତରର ପ୍ରଭାବରେ ସେ ପରଂପରା ଛିନ୍ନ ହେଲେ, ଜୀବନର ସନାତନତ୍ୱ ଓ ମୌଳିକତା ରହେ ନାଇଁ। କାହିଁକି ନା, ଜାତି ନିଜର ଆବଶ୍ୟକମତେ ଉପାଦାନ ସଂଗ୍ରହ କରି ଆତ୍ମରକ୍ଷା କରିନାଇଁ; ଅନ୍ୟର ପ୍ରଭାବରେ ଆତ୍ମବିସ୍ମୃତ ହେବା ଫଳରେ ଆତ୍ମନାଶରେ ପଡ଼ିଅଛି। ସେଥିପାଇଁ ପ୍ରଚାରିତ ଧର୍ମ, ମତବାଦ, ଭାବ ବା ନୀତି ଫଳରେ ଯେଉଁ ଜାତୀୟତା ଗଢ଼ା ହୁଏ, ତାହା ମୌଳିକ

ବା ସନାତନ ହୋଇ ନ ପାରେ। ତାହା ଜନ୍ମରୁ ଏପର୍ଯ୍ୟନ୍ତ ପ୍ରକୃତିର ସହଜ କ୍ରିୟାରେ ଏକ ନୀତି ଓ ଆଦର୍ଶ ଅନୁସରଣ କରି ସ୍ୱାଭାବିକ ବିକାଶରେ ବଢ଼ିନାଇ; ବରଂ ଏହା ବିଭାବ-ବିଶେଷର ସମୂହ ଶକ୍ତି ଉପରେ ଯଥେଚ୍ଛାଚାରର ଫଳ।

ଭାରତୀୟ ସଭ୍ୟତା ଉପରେ ବିଦେଶ ପ୍ରଭାବ ପଡ଼ିଚି। ଭାରତ-ଜୀବନ ବେଳେବେଳେ ବୈଦେଶିକମାନଙ୍କର ଘୋର ଅତ୍ୟାଚାର, ଉପଦ୍ରବ ଭୋଗିଚି। ଭାରତ-ସଂପଦ-ଲୋଭରେ ବିଦେଶୀମାନେ ବାରଂବାର ଏହାକୁ ଆକ୍ରମଣ କରିଅଛନ୍ତି ଏବଂ ଭାରତରେ ନିଜର ଧର୍ମ, ନିଜର ସଭ୍ୟତା ବଳପୂର୍ବକ ପ୍ରଚାର କରିବାରେ ମଧ୍ୟ ପ୍ରୟାସ କରିଅଛନ୍ତି; କିନ୍ତୁ ଭାରତର ମେରୁଦଣ୍ଡ ସେଥିରେ ଟଳି ନାଇ। ଏସବୁ ସତ୍ତ୍ୱେ ଭାରତର ସଭ୍ୟତାର ସ୍ୱାତନ୍ତ୍ର୍ୟ ଲୋପ ପାଇ ନାଇ— ଏହାହିଁ କହିବାର ତାତ୍ପର୍ଯ୍ୟ।

ଦୁର୍ବଳ ଓ କ୍ଷୀଣସତ୍ତ୍ୱ ଲୋକ ପ୍ରବଳ ଓ ଶକ୍ତିମାନ୍ ଲୋକଦ୍ୱାରା ଆକ୍ରାନ୍ତ ହେଲେ, ବେଳେବେଳେ ଅଭିଭୂତ ହୁଏ ଓ ପ୍ରବଳର ଅନୁକରଣ କରିଯାଏ। ପ୍ରଭୁ ଅନ୍ୟାୟ ଓ ଦୁରାଚାର କଲେ, ଭୃତ୍ୟ ବେଳେବେଳେ ସାହାଯ୍ୟ କରେ; ମାତ୍ର ସମସ୍ତେ ସଂସର୍ଗର ଦୋଷ ଗୁଣ ସମାନ ଭାବରେ ଗ୍ରହଣ କରନ୍ତି ନାଇ, କେହି କେହି ବରାବର ବଦଳିଯାଆନ୍ତି। ମାତ୍ର ଯେଉଁମାନଙ୍କର ବ୍ୟକ୍ତିତ୍ୱ ଦୃଢ଼ ଓ ଆଦର୍ଶ ସ୍ଥିର, ସେମାନେ ବିଜିତ, ଭୃତ୍ୟ, ସଂଗୀ, ସଂସର୍ଗୀ, ସହଚର, ଯେ ହୁଅନ୍ତୁ, ସବୁବେଳେ ନିଜେ ନିଜର ଜୀବନକୁ ଚଳାନ୍ତି; ଭଲ ମନ୍ଦ ବାଛି, ଯାହା ଦରକାର ତାହା ଶିକ୍ଷା କରନ୍ତି। ସେଥିରେ ତାଙ୍କର ଜୀବନ ବିକାଶ ଓ ବୃଦ୍ଧି ପାଏ; ନିଜତ୍ୱ ହରାଇ ଅନ୍ୟ ଜୀବନର ଆଦର୍ଶ ଗ୍ରହଣ କରେ ନାଇ। 'ବାଳାଦପି ସୁଭାଷିତଂ', ଅର୍ଥାତ୍, ବାଳକଠାରୁ ଭଲକଥା ଶ୍ରବଣ କରିବା ବଳିଷ୍ଠ ଜୀବନର ଲକ୍ଷଣ; ମାତ୍ର 'ଯଖନ୍ ଯେମନ୍, ତଖନ୍ ତେମନ୍' ଅବସ୍ଥା ଅତି ଦୁର୍ବଳ ବ୍ୟକ୍ତିତ୍ୱ ପ୍ରକାଶ କରେ।

ଭାରତରେ ଗ୍ରୀକ୍, ଶକ, ମୁସଲମାନ ଓ ଖିରସ୍ତାନ, ବିଜେତା ଓ ଧର୍ମ-ପ୍ରଚାରକ ଭାବରେ ବହୁ ଚେଷ୍ଟା କରିଅଛନ୍ତି; ଲକ୍ଷ ଲକ୍ଷ ନରନାରୀମାନଙ୍କର ସନାତନ ଆଦର୍ଶ ମଧ୍ୟ ବଦଳାଇ ଅଛନ୍ତି; ମାତ୍ର ଭାରତର ସମୂହ ଜାତୀୟ ଜୀବନ ନଷ୍ଟ ହୋଇ ନାଇ। ବେଳେବେଳେ ବିଦେଶୀୟମାନଙ୍କଠାରୁ ଆହରଣ କରି ଭାରତ ନିଜର ବ୍ୟକ୍ତିତ୍ୱ ପୁଷ୍ଟ କରିଅଛି; କିନ୍ତୁ କେବେ କାହାରି ପ୍ରଭାବରେ ଆତ୍ମବିସ୍ମୃତ ହୋଇନାଇ। ଧର୍ମପ୍ରଚାର ପାଇଁ ବିଦେଶୀମାନେ ଜୁଲୁମ କରିଅଛନ୍ତି, ପାଦ୍ରୀମାନେ ଲୋଭନୀୟ ଚାତୁରିରେ ଭୁଲାଇଅଛନ୍ତି; ଆଜି ମଧ୍ୟ ନବ ପାଶ୍ଚାତ୍ୟ ସଭ୍ୟତାରେ ଆପାତମୋହନ ରୂପଚ୍ଛଟା ଓ କୃତ୍ରିମତାର ଆଶୁ ତୃପ୍ତିକର ବୈଭବ, ଅପରିଜ୍ଞାତ ଭାବରେ ଏ ଜାତିର ଜୀବନ ଆଦର୍ଶ ବଦଳାଇ ଦେବାକୁ ବସିଅଛି; କିନ୍ତୁ ଏସବୁ ସତ୍ତ୍ୱେ ଆର୍ଯ୍ୟର ସନାତନ ଧର୍ମ ଓ ସଭ୍ୟତା, ପରଂପରାବିଧାନର

ଅପରିଜ୍ଞେୟ ମୌଳିକତା, କର୍ମମୟ ଜୀବନର ସାଧୁ ସ୍ୱାଭାବିକ ଧର୍ମନିଷ୍ଠା, ସମାଜର ପ୍ରାକୃତିକ ଓ କର୍ତ୍ତବ୍ୟମୟ ପ୍ରତିଷ୍ଠାନ ପ୍ରଭୃତି ଆର୍ଯ୍ୟଜୀବନକୁ ଭାରତରେ ଜାଗ୍ରତ ରଖିଅଛି ଓ ରଖିବ।

କେବଳ ଅନ୍ୟ ଜାତିର ପ୍ରଭାବରେ ଯେ ଭାରତୀୟ ଆର୍ଯ୍ୟ ଆତ୍ମବିକ୍ରୟ କରି ନାଇ, ସେତିକି ତାହାର ବିଶେଷତ୍ୱ ନୁହେ। ଅନ୍ୟମାନେ ଭାରତଭୂମିରେ ଜୋରଜବରଦସ୍ତି ଦେଖାଇ ସୁଦ୍ଧା ନିଜର ବ୍ୟକ୍ତିତ୍ୱ-ପ୍ରତିଷ୍ଠା କରି ପାରି ନାହାଂତି; କିଂତୁ ଭାରତ ଜାତୀୟତାର ବିଶାଳ ସନାତନ ବ୍ୟକ୍ତିତ୍ୱ ଆପେ ଆପେ ପ୍ରଚାରିତ ହୋଇ, ଜଗତ୍‌ର ସମୂହ ସଭ୍ୟତା ପୁଷ୍ଟ କରିଅଛି। ବରଂ ପ୍ରତ୍ୟକ୍ଷ ପ୍ରବର୍ତ୍ତନା ବିନା ଭାରତସଭ୍ୟତା ପୃଥିବୀରେ ଯେତେ ପ୍ରଚାରିତ ହୋଇଅଛି, ବଳପୂର୍ବକ ପ୍ରଚାରିତ ହୋଇ ଅନ୍ୟ ସଭ୍ୟତାର ପ୍ରଭାବ ଭାରତରେ ସେତେ ପଶିପାରିଅଛି କି ନା ସଂଦେହ। ସେ କାଳର ମୁସଲମାନ୍ ତରବାରିଧାରରେ ଏବଂ ସବୁ କାଳେ ଖିରସ୍ତାନ୍ ପ୍ରଲୋଭନ ଦେଖାଇ ଓ ନୀତି କୌଶଳ ଅବଲଂବନ କରି ନିଜର ଧର୍ମପ୍ରଚାର କରଂତି; କିଂତୁ ବୌଦ୍ଧର ସାମ୍ୟବାଦ-ନୀତି ଓ ସାଧନା ବଳରେ ନିର୍ବାଣପ୍ରାପ୍ତିର ଦୀକ୍ଷା, କି ମୋହନ ପ୍ରଭାବରେ ସାର୍ଦ୍ଧ ଶତାବ୍ଦୀ ମଧ୍ୟରେ ସ୍ପେନ୍‌ଠାରୁ ଜାପାନ ଓ ସାଇବେରିଆଠାରୁ ସିଂହଳ ପର୍ଯ୍ୟଂତ ଅର୍ଦ୍ଧ-ଜଗତ୍‌ରେ ବ୍ୟାପିଥିଲା, ତାହା ଯୁକ୍ତିବାଦୀମାନେ ଅନୁମାନ କରି ପାରିବେ କି? ସେହି ସୂତ୍ରରେ ପ୍ରାଚୀନ ଗ୍ରୀସ୍ ଭାରତରୁ ଦର୍ଶନ-ମତ ଗ୍ରହଣ କରିଥିବାର ପଂଡ଼ିତମାନେ ସ୍ଥିର କରୁଅଛଂତି; ସେଥିରେହିଁ ଗ୍ରୀସ୍‌ର ଆରିଷ୍ଟଟ୍‌ଲ୍ ଓ ସାଂଖ୍ୟ, ଦୁହିଂଙ୍କର ସୃଷ୍ଟିବ୍ୟାଖ୍ୟା ଏକପ୍ରକାର ହୋଇଅଛି; ପୁଣି ସେହିପରି କେତେ ବିଭାବରେ, କେତେ ପ୍ରକାରରେ ଯେ ବୌଦ୍ଧ ଧର୍ମ-ଦୀକ୍ଷାଦ୍ୱାରା ଆର୍ଯ୍ୟସଭ୍ୟତା ପୃଥିବୀରେ ପ୍ରଚାରିତ ହୋଇଥିବ, ତାହା ଆଜି କିଏ କହିପାରେ?

ପ୍ରାଚୀନ ଭାରତର ଧାରାବାହିକ ଇତିହାସ ଏପର୍ଯ୍ୟଂତ ମିଳି ନାଇ; କିଂତୁ ଅତି ଆଦିମ ଯୁଗରୁ ଭାରତର ସଭ୍ୟତା ପୃଥିବୀରେ ସଭ୍ୟତାର ମୂଳମଂତ୍ର ପ୍ରଚାର କରିଥିବାର ଭୂରି ଭୂରି ପ୍ରମାଣ ମିଳିଅଛି। ଅଂକ ଗଣିବାର ପ୍ରଣାଳୀ ଅର୍ଥାତ୍ ଏକ, ଦଶ, ଶତ, ସହସ୍ର ପ୍ରଭୃତି ଦଶଗୁଣୋତ୍ତର ବିଧାନରେ ଅଙ୍କ ଗଣିବାର ରୀତି ଭାରତରୁ ପୃଥିବୀ ଗ୍ରହଣ କରିଅଛି, ଏହା ସର୍ବବାଦୀସମ୍ମତ। ବୀଜଗଣିତର ତତ୍ତ୍ୱ ଭାରତରେ ପ୍ରଥମେ ଆବିଷ୍କୃତ ହୋଇଥିଲା। ଇଉକ୍ଲିଡ଼ଂକ ଜ୍ୟାମିତିର ମୂଳତତ୍ତ୍ୱ ସିକଂଦରବାହିନୀ ଭାରତର ଯଜ୍ଞବେଦୀ ଓ ମଂଡଳବିନ୍ୟାସାଦିରୁ ଗ୍ରହଣ କରିଥିବାର ଆଭାସ ମିଳେ। ବୈଦ୍ୟଶାସ୍ତ୍ରରେ ଭାରତ ଜଗତ୍‌ର ଆଦି ଶିକ୍ଷାଗୁରୁ। ରସାୟନତତ୍ତ୍ୱ ମଧ୍ୟ ଭାରତରେ ଅତି ପ୍ରାଚୀନ କାଳରେ ଆବିଷ୍କୃତ ହୋଇଥିଲା ବୋଲି ପ୍ରମାଣ ମିଳିଅଛି। ଏହିପରି ଅନୁସଂଧାନରେ ଜଣାଯାଉଅଛି, ଭାରତର ମୌଳିକ ତତ୍ତ୍ୱରାଶି ଯୁଗେ-ଯୁଗେ ପାରସ୍ୟ ଓ ଆରବ ବାଟେ

ଇଉରୋପରେ ପ୍ରଚାର ଲଭିଥିଲା । ପ୍ରାଚୀନ କାଳରେ ପାରସ୍ୟ, ଆରବ ଓ ଭାରତ ମଧ୍ୟରେ ବହୁପ୍ରକାର ଆଦାନ-ପ୍ରଦାନ ଚଳୁଥିଲା ଓ ଏ ସମସ୍ତ ପ୍ରାଚ୍ୟରାଜ୍ୟର ସଭ୍ୟତାର ପ୍ରକୃତି ପ୍ରାୟ ଏକ ଥିଲା । ଆର୍ଯ୍ୟଜୀବନ ଆଜି ଭାରତରେ ଯେଉଁ ସନାତନ ଆଦର୍ଶ ଅନୁସରଣ କରି ଚାଲିଅଛି, ସମସ୍ତ ପ୍ରାଚ୍ୟଦେଶରେ ଦିନେ ସେହି ଜାତୀୟ ଆଦର୍ଶ ଥିଲା । ଏହି ସବୁ ଦେଶରେ, ଏପରି କି ପ୍ରାଚୀନ ଗ୍ରୀସ୍‌ରେ ମଧ୍ୟ, ଜୀବନ ସ୍ୱାଭାବିକ ବିକାଶରେ ବଢ଼ୁଥିଲା । ଖ୍ରୀଷ୍ଟ, ମହମ୍ମଦ ପ୍ରଭୃତି ଏହି ପ୍ରାଚ୍ୟ ଜାତି ମଧ୍ୟରେ ଜନ୍ମିଥିଲେ ସତ୍ୟ; ମାତ୍ର ସେ ଶଂକର, ଚୈତନ୍ୟଂକ ପରି ନିଜର ପ୍ରଚାରିତ ମତକୁ ଜାତିର ସନାତନ ପରଂପରାର ଭିତ୍ତିରେ ସ୍ଥାପନ କରିନାହାଂତି । ସେମାନେ ଜାତିର ପାରଂପରିକ ବିଧି ବିରୁଦ୍ଧରେ ନିଜର ବ୍ୟକ୍ତିଗତ ମତ ପ୍ରଚାର କରି ଜାତିର ସନାତନ ବ୍ୟକ୍ତିତ୍ୱ ପରଂପରା ଛିଂଡାଇଦେଲେ । ସେମାନେ କହିଲେ, ''ପ୍ରାଚୀନ ପରଂପରା ଛାଡ଼ି, ଆଂଭର ପ୍ରଚାରିତ ସତ୍‌ପଂଥା ଗ୍ରହଣ କର ।'' ଶଂକର, ଚୈତନ୍ୟ ଆଦି କିଂତୁ ତାହା କରିନାହାଂତି । ସେମାନଂକ ପ୍ରଚାରିତ ମତ ଜାତୀୟ ଜୀବନର ବିଶାଳ ଗଂଡି ମଧ୍ୟରେ ଗୋଟିଏ ବିଭାବର ବିକାଶ ମାତ୍ର । ସେମାନଂକର ପ୍ରଚାରିତ ମତ ସନାତନ ବେଦଧର୍ମରୁ ବିଚ୍ଛିନ୍ନ ନୁହେ । ସେମାନେ ବେଦବେଦାଂତର ବ୍ୟାଖ୍ୟା ମାତ୍ର କରି ନିଜ ମତ ସ୍ଥାପନ କରିଅଛଂତି । ବାଇବେଲ୍ କିଂବା କୋରାନ୍ ପରି କୌଣସି ବ୍ୟକ୍ତିଗତ ପଂଥାକୁ ନିଜ ବେଦରୂପେ ଧରାଇ ଦେଇ ଜାତିକୁ ପରଂପରାରୁ ଛିନ୍ନ କରିନାହାଂତି । ତାଂକ ମତବାଦରେ ଜୀବନର ସ୍ୱାଭାବିକ ବିକାଶରେ ବ୍ୟକ୍ତିର ଯଥେଚ୍ଛାଚାର ନାଇ ।

ସନାତନ ବେଦମତରୁ ଭିନ୍ନ ବୋଲି କେହି କେହି ବାହାରରୁ ଦେଖି ବୌଦ୍ଧଧର୍ମକୁ ପରଂପରାରୁ ବିଚ୍ଛିନ୍ନ ବୋଲି ମନେକରଂତି; କିଂତୁ ତାହା ନୁହେ । ବୌଦ୍ଧର ସାଧନା, କର୍ମବାଦ, ପୁନର୍ଜନ୍ମ ପ୍ରଭୃତି ଯେ କେବଳ ସନାତନ ମତ ସଂଗେ ସଂପର୍କ ରଖିଅଛି, ତାହା ନୁହେ; ବୌଦ୍ଧର ପୁରାଣ, ଉପାଖ୍ୟାନ, ତଂତ୍ର, ପିତୃସ୍ମୃତି, ଶିକ୍ଷା, ଦୀକ୍ଷା, ଆଚାର୍ଯ୍ୟ, ପରିବାର, ଭିକ୍ଷୁ, ଶ୍ରମଣ, ତିତିକ୍ଷା, ରାଜନୀତି ପ୍ରଭୃତି ସମସ୍ତ ଆର୍ଯ୍ୟ-ପରଂପରାର ଚିହ୍ନ । ପୁଣି ବୌଦ୍ଧଧର୍ମର ମହା ସହିଷ୍ଣୁତା ଓ ସାମ୍ୟବାଦର ବିଶେଷତ୍ୱ ଯେ, ସେ କୌଣସି ଧର୍ମମତ ବା ପରଂପରା ବିରୁଦ୍ଧରେ ଆତ୍ମପ୍ରତିଷ୍ଠା କରିବାର ପ୍ରୟାସ କେବେହେଁ କରିନାଇ । ସେଥିରେହିଁ ଆର୍ଯ୍ୟଜୀବନର ପରଂପରା ବୌଦ୍ଧଧର୍ମ ଭିତରେ ମଧ୍ୟ ଫୁଟି ଦିଶୁଅଛି । ବେଦରୁ ଆପାତତଃ ବିଚ୍ଛିନ୍ନ ହେଲେହେଁ ଆର୍ଯ୍ୟ-ପରଂପରାରେ ବୌଦ୍ଧଧର୍ମର ଅଂଗପ୍ରତ୍ୟଂଗ ଓ ସମସ୍ତ ଅବୟବ ନିର୍ମିତ ହୋଇଯାଇଅଛି ।

ପୁଣି କେବଳ ଧର୍ମମତର ନୂତନତ୍ୱରେ ଯେ ଜାତୀୟ ପରଂପରା ଛିନ୍ନ ହୁଏ, ତାହା ନୁହେ । ଖ୍ରୀଷ୍ଟ, ମୁସଲମାନ ପ୍ରଭୃତି ବିଭିନ୍ନ ଧର୍ମମତ ଆର୍ଯ୍ୟଧର୍ମର ବିଶ୍ୱତୋମୁଖ ଶାଖା ସଂପ୍ରଦାୟ ମଧ୍ୟରେ ରହିଅଛି; କିଂତୁ ସେଥିରେ ଜାତୀୟ

ପରଂପରା ଲକ୍ଷ୍ୟଭ୍ରଷ୍ଟ ହୋଇ ନାଇ; ବରଂ ଭାବିବା ଅସ୍ୱାଭାବିକ ନୁହେ ଯେ, ପ୍ରାଚ୍ୟ ମନୀଷୀ ଖ୍ରୀଷ୍ଟ ଓ ମହମ୍ମଦ, ସେମାନଂକର ଧର୍ମମତର ଆଭାସ ଆର୍ଯ୍ୟର ସାର୍ବଜନୀନ ଧର୍ମଭଂଡାରରୁ ପାଇଥିବେ। ଅବଶ୍ୟ ଅନୁମାନ ଛଡ଼ା ଏ କ୍ଷେତ୍ରରେ ଏପର୍ଯ୍ୟଂତ ଅନ୍ୟ କୌଣସି ବିଶେଷ ପ୍ରମାଣ ନାଇ। ମାତ୍ର ଆର୍ଯ୍ୟଜୀବନର ବିଭାବସବୁ, ବିଶେଷତଃ ଭାରତର ତତ୍ତ୍ୱରାଶିଦ୍ୱାରା ଇଉରୋପର ମତ ଯେ କାଳେ କାଳେ ପ୍ରଭାବିତ ହୋଇଅଛି, ତାର ପ୍ରମାଣ ଯଥେଷ୍ଟ। ନବଯୁଗର ଦାର୍ଶନିକଗୁରୁ ସ୍ପିନୋଜାଂକ ଦର୍ଶନମତ ସଂବଂଧରେ ଯାହା ଜଣାପଡ଼ିଅଛି, ତାହା ଏହାର ଗୋଟିଏ ମାତ୍ର ଉଦାହରଣ। ତାଂକର ଦର୍ଶନ ମତ ବହୁ ପରିମାଣରେ ଅସଂପୂର୍ଣ ଓ ଅପରିପକ୍ୱ ବେଦାଂତ ମତ ପରି ବୋଧହୁଏ। ବହୁକାଳଯାଏ ଏହି ମତଟି ଇଉରୋପରେ ସ୍ୱାଧୀନ ଚିଂତା ପ୍ରସୂତ ବୋଲି ଗୃହୀତ ହୋଇଥିଲା। ଏବେ ପ୍ରତ୍ନତତ୍ତ୍ୱବିତ୍‌ମାନେ ସ୍ଥିର କରିଅଛଂତି, ସ୍ପିନୋଜା ଯୌବନରେ ଥରେ ପାରସ୍ୟକୁ ଆସିଥିଲେ। ସେଠାରେ ଉପନିଷଦ୍‌ର ଗୋଟିଏ ଅସଂପୂର୍ଣ ଆରବୀୟ ଅନୁବାଦ ତାଂକର ହସ୍ତଗତ ହୋଇଥିଲା। ସେହି ବଳରେ ସେ ନିଜର ଦର୍ଶନମତ ପ୍ରକାଶ କଲେ ଏବଂ ଆଜି ସମସ୍ତ ଆଧୁନିକ ଇଉରୋପୀୟ ଦର୍ଶନ ସ୍ପିନୋଜା-ଦର୍ଶନର ବିକାଶ ମାତ୍ର।

ଏପରି ଲକ୍ଷିତ ଓ ଅଲକ୍ଷିତ ଭାବରେ କଳା, ଶିଳ୍ପ, ବାଣିଜ୍ୟ, ଉପନିବେଶ, ବିଧି, ବ୍ୟବହାର, ପ୍ରଚାର, ପର୍ଯ୍ୟଟନ ପ୍ରଭୃତି ନାନାପ୍ରକାରରେ କି ସୂତ୍ରରେ କେତେବେଳେ ଭାରତର ମୌଳିକ ସଭ୍ୟତା ପୃଥିବୀରେ ପ୍ରଚାରିତ ହୋଇଅଛି, ତାହାର ଇୟତ୍ତା ନାଇ। ଗ୍ରୀକ୍ ପଂଡିତ ମେଗାସ୍ଥିନିସ୍, ଜର୍ମାନ୍ ମନୀଷୀ ସୋପେନ୍ ହାଓ୍ୱାର୍ ଓ ଅତି ଆଧୁନିକ ମୋକ୍ଷମୁଲାର୍ ପ୍ରଭୃତି ଭାରତ ସଭ୍ୟତାର ଆଲୋଚନାରେ ବିସ୍ମୟ ଓ ଆନଂଦ ପାଇଥିବା କଥା ସମସ୍ତେ ଜାଣିଥିବେ। ଏହିପରି ବିସ୍ମୟ ଓ ଆନଂଦ ଆସିଲେ ବ୍ୟକ୍ତି ବା ଜାତି ଭାବ ଓ ଆଦର୍ଶ ବିଶେଷର ଗୌରବରେ ପ୍ରଭାବିତ ଓ ଅନୁପ୍ରାଣିତ ହେବା ସ୍ୱାଭାବିକ।

ଏ ସମସ୍ତ ଲକ୍ଷିତ ଅଲକ୍ଷିତ ପ୍ରଭାବ ସତ୍ତ୍ୱେ, ସେ ସବୁ ଦେଶରେ ଆର୍ଯ୍ୟଜୀବନର ପରଂପରା ନାଇ। ଯଦି କେବେ ମୌଳିକ ସନାତନ ପରଂପରା ଥିଲା, ତାହା ଲୋପ ପାଇଅଛି। ମୁଖ୍ୟତଃ ଆର୍ଯ୍ୟସଭ୍ୟତା ହେଉ ବା ନ ହେଉ, ପ୍ରତ୍ୟେକ ଦେଶରେ ଜାତିର ସ୍ୱଭାବ ବିକାଶ ସଂଗେ ସଂଗେ ଗୋଟିଏ ସର୍ବତୋମୁଖୀ ସହଜ ଓ ମୌଳିକ ଅର୍ଥାତ୍ ସନାତନ ପରଂପରା ଫୁଟିଉଠେ। ବ୍ୟକ୍ତିର ଉଚ୍ଛୃଙ୍ଖଳ ମତବାଦ, କିଂବା ବାହାରର କୌଣସି ଘୋର ପ୍ରଭାବର ବାତ୍ୟା ତାହାକୁ ଧ୍ୱଂସ ନ କଲେ ସେ ମରିଯାଏ ନାଇ। ଖ୍ରୀଷ୍ଟ ଓ ମହମ୍ମଦ ନିଜ ନିଜର ସ୍ୱତନ୍ତ୍ର ମତବାଦ ଓ ନୂତନ ଆଦର୍ଶ ନିଜ ଦେଶରେ ପ୍ରଚାର କଲେ। ହୁଏତ ନିଜ ଦେଶରେ ତାହା ସନାତନ ପରଂପରାର ଗୋଟିଏ ମାତ୍ର ବିଭାବ ହୋଇପାରେ

ଏବଂ ସେହି **ଏକମାତ୍ର** ବିଭାବରେ ଜାତିର ସମୂହ ଜୀବନ ପ୍ରଭାବିତ ହେବାରୁ ଜୀବନର ପ୍ରାଚୀନ ପରଂପରା ଲୁପ୍ତ ହେଲା । କୌଣସି ବରଗଛର ଗୋଟିଏ ଡାଳରୁ ଯେପରି ସ୍ୱତନ୍ତ୍ର ଗଛ ହୁଏ ଏବଂ ତାହାର ବ୍ୟାପ୍ତିରେ ମୂଳଗଛଟି ନିସ୍ତେଜ ହୋଇ ମରିଯାଏ, ସେସବୁ ଦେଶରେ ସେହିପରି ମୌଳିକ ସନାତନ ପରଂପରା ଲୁଚିଗଲା ଓ ସେହି ଧର୍ମର ଆଦର୍ଶମାନ କାଳକ୍ରମେ ବିଦେଶକୁ ପ୍ରଭାବିତ କରି ସେଠାରେ ମଧ୍ୟ ମୌଳିକତା ଲୋପକଲା । ଏହି ବ୍ୟକ୍ତିଗତ ଆଦର୍ଶମାନଂକର ସମ୍ମୁଖରେ ସେ ସବୁ ଦେଶର ପରଂପରା ଦୃଢ଼ ରହିବା ଭଳି ସେଥିରେ ହୁଏତ ଶକ୍ତି ନ ଥିଲା । ସେମାନଂକର ମେରୁଦଂଡ ଭାଂଗିଗଲା ।

ମାତ୍ର ଅଶେଷ ଅତ୍ୟାଚାର, ପ୍ରଲୋଭନ ଓ ବିଜାତୀୟ ପ୍ରଭାବ ସମ୍ମୁଖରେ ମେରୁଦଂଡ ଦୃଢ଼ ରଖି, ଭାରତର ଆର୍ଯ୍ୟଜୀବନ ନିଜର ସ୍ୱାଭାବିକ ଦୀପ୍ତି ପ୍ରଚାର କରିଆସିଅଛି । ସମସ୍ତ ନୂତନତା ଏହାର ବିକାଶରେ ସାହାଯ୍ୟ କରିଆସିଅଛି; ଫଳରେ ଏହି ଆର୍ଯ୍ୟଜୀବନର ପ୍ରାକୃତିକ ବର୍ଦ୍ଧନ ଓ ସନାତନ ଅନୁଷ୍ଠାନ ଚିରକାଳ ଅକ୍ଷୁଣ୍ଣ ରହିଅଛି । ପୁଣି ଏହା ଅନନ୍ୟସାଧାରଣ ଦୀପ୍ତିରେ ପୃଥିବୀରେ ଜ୍ୟୋତି ବିକାଶ କରି ନିଜର ବିକାଶରେ ବ୍ୟକ୍ତିତ୍ୱର ସୁବିସ୍ତୀର୍ଣ ପ୍ରଭାବ ପ୍ରକାଶ କରିଆସିଅଛି ଓ ଜୀବଂତ ନୀତିରେ ମହୀୟାନ୍ ଆଦର୍ଶର ଅନୁସରଣ କରି, ସନାତନ ପରଂପରାରେ ଜୀବିତ ରହି ସ୍ଥିର ଅଛି । ଭିନ୍ନ ଆଦର୍ଶମାନଂକର ପ୍ରଭାବରେ ଯୁଗେ-ଯୁଗେ ଏହା ପୁଷ୍ଟ ହୋଇଅଛି, ପୁଣି ଏହି ବିଶ୍ୱତୋମୁଖ ବିକାଶ ଫଳରେ ଭାରତର ଆର୍ଯ୍ୟଜୀବନ ଏକ ବ୍ୟାପକ ଓ ବିଶ୍ୱଜନୀନ ସଭ୍ୟତାରେ ନିଜର ପୁଷ୍ଟ ପୁରାଣ ମସ୍ତକ ଉତ୍ତୋଳନ କରି, ସ୍ୱାଭାବିକ ଜୀବନ ଦୀପ୍ତି ଓ ବିଶ୍ୱମୋହନ ଜାଗରଣରେ ଜଗତ୍ ଉଜ୍ଜ୍ୱଳ କରିବାର ସେହି ପୁଣ୍ୟ ଅଧିକାରରେ ପ୍ରତିଷ୍ଠିତ ରହିଅଛି ।

□□□

# ଦ୍ୱିତୀୟ ଅଧ୍ୟାୟ

## ଆର୍ଯ୍ୟଜୀବନର ବୀଜ— ଜୀବନ-ସଂଭୋଗ

ଜୀବନ ଗୋଟିଏ ଆଦର୍ଶର ନିୟମିତ ବିକାଶ-ପରଂପରା। ଏ ବିକାଶରେ ବେଳେବେଳେ ତାହାର ନୂତନ ନୂତନ ବିଭାବ ଫୁଟିଉଠେ। ଏ ସମସ୍ତ ବିଭାବରେ ଆଦର୍ଶର ଶୃଙ୍ଖଳା ଥାଏ ଓ ପର୍ଯ୍ୟାଲୋଚନା କଲେ ଦେଖାଯିବ, ପ୍ରତ୍ୟେକ ନୂତନ ବିଭାବ ମୂଳରେ ଗୋଟିଏ ଗୋଟିଏ ଅଭାବ ଅଛି। ଆଦର୍ଶ ପାଇବାକୁ ଗଲାବେଳେ, ପୂର୍ଣ ହେବାକୁ ଇଚ୍ଛା କଲାବେଳେ, ଅଭାବ ସ୍ୱାଭାବିକ। ଏହି ଅଭାବରୁ ଆକାଂକ୍ଷା ଓ ଏହି ଆକାଂକ୍ଷାହିଁ ସଂଭୋଗ-ସ୍ପୃହା। ଅତଏବ ସମସ୍ତ ଜୀବନକୁ ଗୋଟିଏ ସଂଭୋଗର ପରଂପରା କୁହାଯାଇପାରେ; ମାତ୍ର ସେ ସଂଭୋଗ ସଂଗେ ସଂଗେ ଅଭାବ ନିତ୍ୟ ପ୍ରୋତ ରହିଅଛି। ମୋଟକଥା, ଆଦର୍ଶ ଥିଲେ ଅଭାବ ଅଛି; ଅଭାବ ନ ଥିଲେ ବିକାଶ ଅସଂଭବ। ସମସ୍ତ ବିକାଶରେ ଆତ୍ମଲାଭ ଓ ଏହି ଆତ୍ମଲାଭହିଁ ସଂଭୋଗ। ଅତଏବ ଅଭାବ ବିକାଶର ବୀଜ ଓ ସଂଭୋଗର ବିଭାବାଂତର। ଅଭାବପୂରଣର ଆକାଂକ୍ଷାହିଁ ଜୀବନର ଲକ୍ଷଣ; ପୁଣି ସମସ୍ତ ଜୀବନ-ସଂଗ୍ରାମ ମୂଳରେ ଏହି ଐଶୀ ଆକାଂକ୍ଷା ବିଦ୍ୟମାନ। ସଂଭୋଗ ସଂଗେ ଅଭାବର ଏହି ନିତ୍ୟ ସଂବଂଧ ସାଧାରଣତଃ ସୁବୋଧ। ଏହାହିଁ ଜୀବନକୁ ଗୋଟିଏ ପ୍ରହେଳିକା କରି ରଖିଅଛି। ବିକାଶରେ ଅଭାବ ଅପରିହାର୍ଯ୍ୟ ହେଲେହେଁ, ଅଭାବ ବିକାଶ ନୁହେ— କେବଳ ଅଭାବରେ ଜୀବନ ପରିସମାପ୍ତ ନୁହେ। ବରଂ ଜୀବନରେ ଏହି ଅଭାବ ଦେଖି ଦେଖି ଅଭାବର ଧାରଣାରେ ଅଭିଭୂତ ହେଲେ, ବିକାଶ ହ୍ରସ୍ୱ ହୁଏ; ବେଳେବେଳେ ବିଲୀନ ମଧ୍ୟ ହୁଏ। ପୁଣି ଯେଉଁ ଜୀବନ ଅତ୍ୟଂତ ବିକାଶପର, ତା ସଂଗେ ଏହି ଅଭାବର ପ୍ରହେଳିକା ତୀବ୍ରଭାବରେ ଜଡ଼ିତ ରହିବା ସ୍ୱାଭାବିକ। ବାହାରରୁ ଦେଖିଲେ ବେଳେବେଳେ ଏହି ଅଭାବହିଁ ଦୃଷ୍ଟିରେ ପଡ଼େ; ମାତ୍ର ଜୀବନର ଗତି ଆଲୋଚନା କରି, ଶ୍ରୀବୃଦ୍ଧି ଓ ବିକାଶ ଲକ୍ଷ୍ୟ କରି ଏହି ଅଭାବର ପ୍ରକୃତି ଅବଧାରଣ କରିବାକୁ ହେବ। ବିକାଶମୟ ଜୀବନରେ ଅଭାବ ନ ଦେଖି, ଏହି ଅଭାବ ପରିବର୍ତ୍ତନରେ ନିତ୍ୟ ସଂଭୋଗ ଦେଖିବାକୁ ହେବ। ସଂଭୋଗର ସଜୀବତା ମଧ୍ୟରେ ଏ ଅଭାବ ଗୋଟିଏ ଆଭାସ ମାତ୍ର। ସଂଭୋଗକୁ ସରସ କରିବାପାଇଁ, ବିକାଶକୁ ଜୀବଂତ କରିବା ନିମଂତେ ଜୀବୀର ଆତ୍ମଲାଭ ବା ଆଦର୍ଶ ଲାଭ କଳ୍ପନାରେ ଯେପରି କି ଏହି ଅଭାବ ସୃଷ୍ଟିବିଧାନରେ

ଗୋଟିଏ ପ୍ରେରଣାର ଭିତ୍ତି। ସଂଭୋଗର ସମସ୍ତ ସରସତା ଓ ପ୍ରୀତି ମଧ୍ୟରେ ଦାର୍ଶନିକ ଏହି ଅଭାବ ଲକ୍ଷ୍ୟ କରିପାରେ; କିଂତୁ ଏହା କଦାପି ସଂଭୋଗର ପ୍ରତ୍ୟବାୟ ନୁହେଁ; ବରଂ ପ୍ରମାଣ।

ସେଥିପାଇଁ ସ୍ଥୂଳଦୃଷ୍ଟିରେ ଇତିହାସ ଆଲୋଚନା କଲେ, ବୋଧହୁଏ ଆର୍ଯ୍ୟଜୀବନ ଯେପରି କି ଅଭାବମୟ। ଜୀବନର ଅଭାବ ଅନୁଭବହିଁ ଆର୍ଯ୍ୟର ସ୍ଥିରଭାବ। ସଂସାରରେ ଜନ୍ମିଅଛି, ବଢ଼ୁଅଛି, ଆଶା ଓ ଆକାଂକ୍ଷାରେ ମାନବ କର୍ମ ଆଚରଣ କରିଯାଉଅଛି; କିନ୍ତୁ ସେଥିରେ ଯେପରି କି ତାର ସଂତୋଷ ବା ସୁଖ ନାଇ। ଏ ସଂସାର ତାକୁ ସ୍ଥିର ସୁଖର ଆଶାରେ ଆବଦ୍ଧ କରି ପାରୁ ନାଇ। ଜୀବନର ପରପାରରେ ସବୁବେଳେ ଆର୍ଯ୍ୟର ଦୃଷ୍ଟି, ଭବିଷ୍ୟତ୍‌ରେ ତାହାର ନିର୍ଭର। ମୃତ୍ୟୁରେ ଜୀବନର ଶେଷ ନୁହେଁ। ଜୀବନର ଶ୍ରୀବୃଦ୍ଧି ଓ ବିକାଶ ପାଇଁ ଜୀବନ ସଂଗେ ମୃତ୍ୟୁର ଯେପରି କି ନିତ୍ୟ ସଂବଂଧ। ଏ ସମସ୍ତ ବିଶ୍ୱସଂସାର, ଜୀବନର ସମସ୍ତ ଭୋଗ୍ୟବସ୍ତୁ ମଧ୍ୟରେ ରହି ଆର୍ଯ୍ୟସଂତାନ ଯେପରି କି ସର୍ବଦା ସ୍ୱପ୍ନ ଦେଖୁଅଛି। ସମସ୍ତ ଦୃଶ୍ୟମାନ ବାସ୍ତବ ଜଗତ୍ ତା' ପକ୍ଷରେ ଗୋଟିଏ ଦୀର୍ଘ ସ୍ୱପ୍ନ। ବାସ୍ତବ-ରାଜ୍ୟରେ ସେ ସତ୍ୟ ଦେଖୁ ନାଇ; ସତ୍ୟର ସ୍ୱପ୍ନ ମାତ୍ର ଦେଖୁଅଛି। ଦିବାସ୍ୱପ୍ନ ପରି ସେ ଯାହା କଳ୍ପନା କରୁଅଛି, ତାହାହିଁ ଯେପରି କି ଆର୍ଯ୍ୟ ପକ୍ଷରେ ଜୀବଂତ— ସରସ— ସତ୍ୟ; ତାହାହିଁ ଚିର— ତାହାହିଁ ସ୍ଥିର— ତହିଁରେହିଁ ପୂର୍ଣ୍ଣ ସଂତୋଷ ଓ ସୁଖ। ବାସ୍ତବ ତାହାର ସ୍ୱପ୍ନ— ସ୍ୱପ୍ନହିଁ ତାହାର ସତ୍ୟ; ସଂଭୋଗରେ ଅଭାବ ଓ ଅଭାବର ଆଲୋଚନାରେ ସଂଭୋଗ। ଏହିପରି ଆର୍ଯ୍ୟଜୀବନ ଅନନ୍ତ ପ୍ରହେଳିକାମୟ।

ଉପନିଷଦ୍‌ରେ ଏହି ସତ୍ୟ ପ୍ରତିଭାତ ଏବଂ ବୈଦିକ ଧର୍ମୀମାନଂକରେ ଏହାହିଁ ପ୍ରତିପାଦିତ ଓ ପ୍ରଚାରିତ। ବାସ୍ତବ ଜଗତ୍‌ରେ ଜୀବନ ମରଣ କିଛି ନୁହେ। ଜଂତୁ ଶସ୍ୟପରି ଜାତ ହେଉଅଛି ଓ ଶସ୍ୟପରି ପରିପାକରେ ତାହାର ମୃତ୍ୟୁ। ପୂର୍ବେ ପୂର୍ବପୁରୁଷମାନେ କେତେ ମଲେଣି, ପରେ ଉତ୍ତର-ପୁରୁଷମାନେ କେତେ ଜନ୍ମିବେ ଓ ମରିବେ। ଏ ସବୁ କ୍ଷଣସ୍ଥାୟୀ ଜୀବନ-ମରଣର ପ୍ରହେଳିକା; ସ୍ଥାୟୀ ନୁହେ। ଏ ସବୁ ଦେଖି ଦେଖି ଜୀବନର ଚିରସତ୍ୟ, ସଂସାରର ମୂଳତତ୍ତ୍ୱ ଅନ୍ୱେଷଣ କରିବାକୁ ହେବ। ଏ ବିଶାଳ ପ୍ରହେଳିକାର ମହାପୀଠ ଖୋଜିବାକୁ ହେବ। ଏ ସବୁ ଯାହାର ବିକାଶ, ଯେଉଁ ସ୍ଥିର ବସ୍ତୁର ସ୍ଥିତି ଓ ଲୀଳାରେ ଏ ସବୁ ସଂଭବ ହେଉଅଛି, ତାକୁ ପାଇବାକୁ ହେବ; ସେ ବସ୍ତୁର ଧାରଣା କରିବାକୁ ହେବ। ଜୀବନ-ମରଣ ପରି ସୁଖ-ଦୁଃଖ ସର୍ବଦା ଲାଗିରହିଚି। ସଂସାରରେ କୌଣସି ସୁଖ ସ୍ଥାୟୀ ନୁହେ। ଦୁଃଖ ଜଗତ୍‌କୁ ଗ୍ରାସ କରି ରହିଛି। ଯାହା ସୁଖପରି ଲାଗୁଚି, ତାହା କ୍ଷଣେ ମାତ୍ର ରହି ଦୁଃଖର ଦ୍ୱାର ଫିଟାଇଦେଉଅଛି ମାତ୍ର। ନିତ୍ୟ ସୁଖର ଅନ୍ୱେଷଣରେ ସେହି

ଦୁଃଖର ପ୍ରତିକାର କରିବାକୁ ହେବ। ଶରୀରୀର ଶରୀର [illegible]...ବଂଧ।...ଦୁଃଖ, ଶୋକ, ଜରା, ବ୍ୟାଧି, ମୃତ୍ୟୁଗ୍ରସ୍ତ ଏହି ଶରୀରବଂଧ ଏଡ଼ିବାକୁ ହେବ। ବଂଧରୁ ମୁକ୍ତି ଲଭିବାକୁ ହେବ। ସେ ମୁକ୍ତି କିପରି ? ସେ ଚିର ସତ୍ୟ ଓ ସ୍ଥାୟୀ ସୁଖ କଅଣ, କେଉଁଠାରେ ?— ମାନବାତ୍ମାର ଏହି ନିତ୍ୟ ଜିଜ୍ଞାସା ସଂଗେ ଉପନିଷଦ୍-ତତ୍ତ୍ୱରାଶିର ନିତ୍ୟ ସଂବଂଧ। ଏହି ନୈସର୍ଗିକ ଐଶୀ ଜିଜ୍ଞାସାର ଫଳସ୍ୱରୂପ ଦର୍ଶନତତ୍ତ୍ୱରାଶିର ବିକାଶ।

ଉପନିଷଦ୍‌ର ସାକ୍ଷାତ୍ ଉତ୍ତରାଧିକାରୀ ବୌଦ୍ଧଭାବ, ଏହି ଜିଜ୍ଞାସା— ଏହି ସମସ୍ୟାରେ ପୂର୍ଣ୍ଣ। କିଂତୁ ବୈଦିକ ଦର୍ଶନମାନଂକ ପରି ଏଥିରେ ଜୀବନର ପରପାରରେ, ପ୍ରହେଳିକାର ଅନ୍ତରାଳରେ ଅନ୍ୟ ସ୍ଥାୟୀ ସୁଖର ଅନ୍ୱେଷଣ ତାଦୃଶ ପ୍ରକଟିତ ନୁହେ। ଉପନିଷଦ୍ କହିଲେ, ସଂସାରରେ ଲୋକର ବଂଧଜନିତ ଦୁଃଖ ହୁଏ। ସେ ବଂଧରୁ ମୁକ୍ତି ଲଭିବାକୁ ହେବ। ଆତ୍ମା ଶୁଦ୍ଧ, ନିରବଲଂବ, ଅବିନାଶୀ। ଦେହବଂଧରେ ଜଡ଼ିତ ନ ହେଲେ, ତାହାର ନିତ୍ୟ ସୁଖର ପ୍ରତ୍ୟବାୟ ନାଇ। ଦେହବଂଧହିଁ ଅସୁଖ, ଅଶାଂତି ଓ ଅସଂତୋଷର ହେତୁ। ଏହାହିଁ ଉପନିଷଦ୍‌ର ମୁକ୍ତି। ମାତ୍ର ଦେହବଂଧରୁ ବିଚ୍ଛେଦହିଁ ବୁଦ୍ଧଭାବରେ ଶେଷ। ଏହିଠାରେହିଁ ଦୁଃଖର ନିଷ୍ପତ୍ତି। ଏହି ଦୁଃଖର ନିଷ୍ପତ୍ତିହିଁ ସୁଖ— ଏହାହିଁ ମୁକ୍ତି। ଦୁଃଖନାଶର ପରପାରରେ ବିମଳ ଶୁଦ୍ଧ ଆତ୍ମବସ୍ତୁର ଯେ ବିକାଶ, ସେ ବିଷୟରେ ବୁଦ୍ଧ ନୀରବ। ସେ ବିଷୟରେ ମାନବର ଯେପରି କି କିଛି ଚିଂତା କରିବାର ନାଇ। ଦେହବଂଧହିଁ କ୍ଳେଶ; ଜନ୍ମରେ ଶରୀରବଂଧ ଅନିବାର୍ଯ୍ୟ। କର୍ମ ତଥା କର୍ମପରଂପରାହିଁ ଜନ୍ମର ହେତୁ। ସାଧନାବଳରେ ସେହି ପରଂପରା ଛିଂଡାଇପାରିଲେ 'ନିର୍ବାଣ' ହେବ; ଅର୍ଥାତ୍ ଆଉ ଜୀବନ ଦେହରେ ସଂପୃକ୍ତ ହେବ ନାଇ, କର୍ମ ରହିବ ନାଇ— ଫଳ କଥା, ଆଉ ଜନ୍ମ ହେବ ନାଇ। ଏହିପରି ଦୁଃଖରୁ ତ୍ରାହି ପାଇଲେ ସାଧନାରେ ସିଦ୍ଧି ହେଲା। ଦୁଃଖନାଶହିଁ ମୁକ୍ତି। ସେ ଦୁଃଖ ନାଶ ପରେ ଯେ ବିମଳ ସ୍ଥାୟୀ ଆନଂଦ, ସେ ବିଷୟରେ ଆଉ କିଛି ନାଇ। ଦୁଃଖନାଶର ପରପାରରେ ଶୁଦ୍ଧ, ବୁଦ୍ଧ, ସଂଭୋଗମୟ ଆତ୍ମାର ଲୋଭ ଦେଖାଇ ମାନବକୁ ସାଧନପଥରେ ପଥିକ କରିବାକୁ ବୁଦ୍ଧ ଇଚ୍ଛା କରିନାହାଂତି।

ବୌଦ୍ଧଧର୍ମର ଯେ ଦୁଃଖନାଶ କଥା କୁହାଗଲା, ସେ ନୀତିରେ ଜୀବନ ଚଳାଇଲେ ଆପାତତଃ ବୋଧହୁଏ ସଂଭୋଗମୟ ବାସ୍ତବଜୀବନ ନୀରସ ହୋଇପାରେ— ଜୀବନ-କ୍ରିୟାରେ ବିତୃଷ୍ଣା ଆସିପାରେ; କିଂତୁ ତାହା ନୁହେଁ। କର୍ମର ସାଧନାରେ ବଂଧରୁ ମୁକ୍ତି ବା ବିତୃଷ୍ଣା, ସାଧନାର ବରଂ ପ୍ରତ୍ୟବାୟ। ସେଥିପାଇଁ ଏହି କର୍ମବଂଧ ଓ ଦୁଃଖନାଶ ସଂଗେ ସଂଗେ ବୌଦ୍ଧର ବାସ୍ତବ-ଜୀବନ-ମମତା ଅତି ଅଦ୍‌ଭୁତଭାବରେ ପ୍ରକାଶିତ ହୋଇଅଛି। ଏହି ବ୍ୟକ୍ତିଗତ ଦୁଃଖ ଭାବରୁ ବୌଦ୍ଧଧର୍ମର ଅନଂତ ସାମ୍ୟ, ମୈତ୍ରୀ, ଜୀବମାତ୍ରର ଦୁଃଖରେ

ସହାନୁଭୂତି। ଏହିପରି ବ୍ୟତିରେକୀ ସୁଖରେ ବାସ୍ତବ ଜୀବନର ସଂଭୋଗ ସଂଗେ ବୌଦ୍ଧର ମମତା; ମାନବ ମାତ୍ରରେ, ଏମଂତ କି ଜୀବମାତ୍ରରେ ଅନୁକଂପାର ଏକତ୍ୱଭାବ ଓ ଜୀବମାତ୍ରର ଦୁଃଖାପନୋଦନର ବିଶାଳ ସ୍ପୃହା। ଜୀବନର ପରପାରରେ ବା ପ୍ରହେଳିକାର ଅଂତରାଳରେ, ଆଉ ସ୍ୱପ୍ନରାଜ୍ୟର ତୃଷ୍ଣା ବୌଦ୍ଧର ନାଇ। ତେଣୁ ସେ ସର୍ବତୋଭାବରେ ଏହି ଜଗତ୍‌ର ପ୍ରାଣୀ, ଏହି କ୍ରିୟାରାଶି ମଧ୍ୟରେ ତାର ଆତ୍ମପ୍ରଚାର ଓ ନିର୍ବାଣ। ଜୀବନର ଅବଶ୍ୟଂଭାବୀ ବାସ୍ତବତା ମଧ୍ୟରେ ତାର ସାଧନା। ସମସ୍ତ ଜଗତ୍‌କୁ ବିସ୍ତୀର୍ଣ୍ଣ ପ୍ରାଣରେ ଆଲିଂଗନ କରି, କ୍ରିୟାପରଂପରା ବ୍ୟାଖ୍ୟା କରିବା ହିଁ ବୌଦ୍ଧର ଲକ୍ଷ୍ୟ। ନିର୍ବାଣ ପୂର୍ବରୁ ସଂସାର ଛାଡ଼ି ଯିବାର ସ୍ଥାନ ନାଇ; ଅତଏବ ସଂସାରକୁ ସର୍ବତୋଭାବରେ ବାସୋପଯୋଗୀ କରିବାକୁ ହେବ। ସାଧନାକ୍ଷେତ୍ର ଏହି ସଂସାରକୁ ସରସ କର୍ମଭୂମି କରି, ସେହି ସରସତା ବା ପ୍ରେମରେ ବିସ୍ତୀର୍ଣ୍ଣ ବିଶ୍ୱ ଆଲିଂଗନ କରିବାକୁ ହେବ। ଏଥିରେ ନୀରସତା ବା ଶୁଷ୍କତା ସଂଭବ ନୁହେ ଓ ତାହା ହୋଇ ନାଇ। ପ୍ରାଚୀନ ଜଗତ୍‌ରେ ବୌଦ୍ଧଧର୍ମ ପ୍ରଭାବରେହିଁ ଅଶୋକଂକ ପରି ଉଦାର ମନସ୍ୱୀ, କନିଷ୍କଂକ ପରି ତେଜସ୍ୱୀ ସାଧକ, ହୁଏନ୍‌ସାଂକ ପରି ପ୍ରଚୁର-ପ୍ରାଣ ପରିବ୍ରାଜକ, ଚେଂଗିସ୍ ଖାଁଙ୍କ ପରି ବିଶ୍ୱବିଜୟୀ ବୀର ଇତିହାସର କୀର୍ତ୍ତିସ୍ତଂଭରୂପେ ବିରାଜିତ ରହିଅଛଂତି। ବୌଦ୍ଧ ପ୍ରଭାବରେ ଚୀନ, ଜାପାନ ଆଦି ଜୀବନର ସରସତାରେ ପୃଥିବୀ ମୁଗ୍ଧ କରୁଅଛଂତି।

ମାତ୍ର ଉପନିଷଦ୍ ଓ ଦର୍ଶନମାନଂକରେ ଜନ୍ମବଂଧଗତ ଦୁଃଖର କଥା ଏବଂ ବୌଦ୍ଧମତରେ କେବଳ ଅସହ୍ୟ ଜନ୍ମବଂଧ-କ୍ଳେଶରେ ନିର୍ବାଣର ପ୍ରୟାସ ଦେଖି ଇଉରୋପର ଅନେକ ପ୍ରାଚ୍ୟପ୍ରତ୍ନତତ୍ତ୍ୱବିଦ୍ ପଂଡିତ କହଂତି, "ଆର୍ଯ୍ୟମାନେ ଜୀବନକୁ ସର୍ବଦା ଦୁଃଖମୟ ବୋଲି ବିଚାରୁଥିଲେ ଏବଂ ସେହି ଦୁଃଖରୁ ବ୍ୟକ୍ତିଗତ ଭାବରେ ତ୍ରାଣ ଲଭିବା ସେମାନଂକର ସମସ୍ତ ସାଧନାର ମୁଖ୍ୟ ଲକ୍ଷ୍ୟ ଥିଲା। ଅନଂତ ଚିତ୍ର-ଜଗତ୍ ଆଖି ଆଗରେ ନାଚିଯାଉଅଛି; କ୍ରିୟାପ୍ରବାହ ଇନ୍ଦ୍ରିୟ-ସୁଖରେ ପ୍ରବେଶ କରି ପ୍ରାଣରେ ବ୍ୟାପିଯାଇଅଛି; ମଧୁର ମୋହନ ଭାରତ-ପ୍ରକୃତି ସଂଭୋଗ ସାମଗ୍ରୀ ମେଳାଇ ବସିଅଛି; କିଂତୁ ଭାରତୀୟ ଆର୍ଯ୍ୟର ସେଥିରେ ପ୍ରୀତି ନାଇ; ଆହ୍ଲାଦ, ଆମୋଦ ନାଇ। ତାର ସବୁବେଳେ ଦୁଃଖ, ବିତୃଷ୍ଣା ଓ ଜୀବନସଂଭୋଗରେ ଅରୁଚି— ଲକ୍ଷ୍ୟ କେବଳ, କିପରି ଏ ଜୀବନବଂଧରୁ ତ୍ରାହି ପାଇବ। ଭାରତ-ଜଗତ୍‌ରେ ମାନବର ସର୍ବଦା ହାହାକାର। 'କଳ୍ପବୃକ୍ଷମୂଳେ ବସି' ଭାରତୀୟ ଯେପରି କି 'ଚିରଉପବାସୀ'; ଜଗତ୍‌କୁ ଦୁଃଖ ଦୃଷ୍ଟିରେ ଦେଖି ସର୍ବଦା ବାସ୍ତବ ଜଗତ୍‌ରେ ତାର ଅରୁଚି ଓ ଅନାଦର; ଯାହାକୁ ବେଳେବେଳେ ସୁଖ ବୋଲି ମନେକରେ, ସେଥିରେ ମଧ୍ୟ ଯେପରି କି ଆତଂକ; କାଳେ ସେ ସୁଖରେ ଭୁଲି, କ୍ଷଣିକ ସ୍ପୃହାରେ ଜୀବନ-ସଂଭୋଗର ଆଦର କରିବାକୁ

ଚାଳିତ ହେବ। ସୁଖ ଦୁଃଖ ଦୁହିଁଙ୍କି ସମାନ ଭାବିବା; ଅର୍ଥାତ୍ ସୁଖପରି ଯାହା ଲାଗେ ତାକୁ ଦୁଃଖ ବୋଲି ଭାବିବା, ତାର ସାଧନା। ଏହି ସାଧନାରେ ଦୁଃଖଭାବ ଦୃଢ଼ ହେଲେ, ତାର ମୁକ୍ତି ସୁଗମ ହେବ ବୋଲି ତାର ଧାରଣା। ଉଦାସୀନତା ତାର ଲକ୍ଷ୍ୟ, ତାରି ସାଧନାହିଁ ତାର ଜୀବନ।

"ଏହି ହାହାକାର ନୀତିରେ ଜୀବନର ସାଧନା ଓ ଧର୍ମଭାବ ସରସ ହେବ କାହୁଁ? ଜୀବନକ୍ରିୟାରେ ସବୁବେଳେ ଅତୀନ୍ଦ୍ରିୟର ଚିନ୍ତା; ସାଧନାରେ ସବୁବେଳେ ଏକ ସ୍ୱପ୍ନର ମୋହ; କଳ୍ପିତ ରାଜ୍ୟପ୍ରାପ୍ତିର କାମନା। ଏଥିରେ ଦୈନନ୍ଦିନ କ୍ରିୟାକଳାପରେ ରୁଚି ଛାଡ଼ିଯିବା ସ୍ୱାଭାବିକ। ଯେଉଁ ଜଗତ୍‌କୁ ଈଶ୍ୱରମୟ ଦେଖିବା ମାନବର ପରମ ଆଦର୍ଶ, ସେହି ବାସ୍ତବ ଜଗତ୍ ଆର୍ଯ୍ୟ ପକ୍ଷରେ ଏକ ଭ୍ରାନ୍ତି। ଈଶ୍ୱର ସେଥିରେ ରହିବେ କିପରି? ବେଳେବେଳେ ସେଥିରେ ଈଶ୍ୱର କଳ୍ପନା କଲେ ମଧ୍ୟ, ତାହା ଏକ କଳ୍ପନାର ଖେଳ ମାତ୍ରରେ ପର୍ଯ୍ୟବସିତ ହେବ— ପ୍ରାଣର ପ୍ରାକୃତିକତାରେ ଜଡ଼ିତ ହେବ କାହୁଁ? ପୁଣି ଏପରି ଅପ୍ରାକୃତ କଳ୍ପନା ଆଦର୍ଶ ହେଲେ, ସେଥିରେ ସରସତାର ପୁଲକ ଓ ଶାନ୍ତି ଅସମ୍ଭବ। ଯେଉଁ ସଂସାର ଛାଡ଼ିବାରେ ମୁକ୍ତି, ସେଥିରେ ଈଶ୍ୱର ପୁଣି ପୂରିରହିବେ କିପରି? ଫଳରେ ଆର୍ଯ୍ୟ ଗାଇଛନ୍ତି, "ନ ତତ୍ର ଚକ୍ଷୁର୍ଗଚ୍ଛତି, ନ ବାଗ୍‌ଗଚ୍ଛତି ନୋ ମନଃ"; ଅର୍ଥାତ୍ ସେ ପରମ ପଦାର୍ଥ ନିକଟକୁ ଚକ୍ଷୁ (ପ୍ରଭୃତି ଇନ୍ଦ୍ରିୟମାନେ), ବାକ୍ୟ ଓ ମନ କେହି ପହଞ୍ଚି ପାରନ୍ତି ନାହିଁ। ଏ ଚିନ୍ତାରେ ସାରା ଜଗତ୍ ଈଶ୍ୱରଶୂନ୍ୟ, ଶୁଷ୍କ ଓ ନୀରସ; ଜୀବନ ଗୋଟିଏ ଭାର, କ୍ରିୟାରାଶି ବାସ୍ତବିକ ଗୋଟିଏ ପ୍ରହେଳିକା।

"ଏହିପରି ଜୀବନ ନୀତି ଓ ଧର୍ମଭାବରେ ମାନବର ବାସ୍ତବ ବିକାଶ ପ୍ରତିହତ ହେବାର କଥା ଏବଂ ଫଳରେ ତାର ବୈଷୟିକ ଉନ୍ନତି ଅସମ୍ଭବ। ଭାରତରେ ତାହାହିଁ ହୋଇଅଛି। ସମସ୍ତ ଉନ୍ନତ, ଯୁକ୍ତିଯୁକ୍ତ ଦର୍ଶନବାଦ ମଧ୍ୟରେ ପ୍ରାଣର ସରସତା ନାହିଁ— ପ୍ରାଣୀର ସମ୍ଭୋଗପ୍ରବଣତା ନାହିଁ। ଦୁଃଖମୟ ସଂସାରରୁ ଅତୀତ ହେବା ନିମନ୍ତେ, 'ଚିରହାହାମୟ' ଜୀବନରୁ ବିଚ୍ଛିନ୍ନ ହେବା ପାଇଁ ତାହାର ସାଧନା। ସେ ସାଧନା ଶୁଷ୍କ ହେବା ସ୍ୱାଭାବିକ। ସେହି ବିଶ୍ୱାସ ଓ ଶୁଷ୍କ ସାଧନାରେ ଯୋଗୀ-ଋଷିମାନେ ଇନ୍ଦ୍ରିୟର ବିନାଶ କରି ସମସ୍ତ ବାହ୍ୟ ଜ୍ଞାନଶକ୍ତିର ବିଲୋପସାଧନ କରି, ସମସ୍ତ ଜୀବନ-ସମ୍ଭୋଗରୁ ସ୍ୱାଭାବିକ ରୁଚି ଫେରାଇ, ଭ୍ରାନ୍ତିମୟ ସଂସାରରୁ ଉଦ୍ଧାର ଲଭିବାକୁ ଯତ୍ନ କରନ୍ତି।"

ଯେଉଁ ଇଉରୋପୀୟମାନେ ଏ ମତ ବ୍ୟକ୍ତ କରନ୍ତି, ସେମାନେ ପ୍ରାଚୀନ ଗ୍ରୀକ୍‌ମାନଙ୍କ ସଭ୍ୟତାକୁ ଏ କ୍ଷେତ୍ରରେ ଉଦାହରଣ ଦେଇ ତୁଳନା କରିଥାଆନ୍ତି। ଗ୍ରୀକ୍‌ମାନଙ୍କ ପାଖେ ଜୀବନ ସମ୍ଭୋଗ ପୂର୍ଣ୍ଣ। ଗ୍ରୀସ୍ ତାଙ୍କର ସ୍ୱର୍ଗଭୂମି। ଦେବତାମାନେ ତାଙ୍କର ସହଚର। ଭୋଜନ ତାଙ୍କର ଅମୃତ। କ୍ରୀଡ଼ା ତାଙ୍କର

ତାଂଡବ ନୃତ୍ୟ। ଜୀବନର କ୍ରିୟାକଳାପରେ ଆନଂଦ-ଉପଭୋଗ ତାଂକ ପକ୍ଷରେ ପରମ ସୌଭାଗ୍ୟ। ସମସ୍ତ ଭୋଗ ଈଶ୍ୱରଦତ୍ତ, ସମସ୍ତ କ୍ଳେଶ ମାନବର ପରିତ୍ୟାଜ୍ୟ। ଦେଶ, ଜାତି, ରାଜ୍ୟ, ଧନ, ସ୍ୱାଧୀନତା, ଜାତୀୟ ଆମୋଦ ପ୍ରଭୃତିର ବିକାଶ ସେମାନଂକର ଏହି ଜୀବନସଂଭୋଗର ସାକ୍ଷ୍ୟ ପ୍ରଦାନ କରୁଅଛି। ଫଳରେ ସେହିମାନେ ପୃଥିବୀରେ ବୈଷୟିକ ଉନ୍ନତି ପ୍ରଚାର କରିଅଛଂତି। ଦେଶପାଇଁ ପ୍ରାଣଦାନକରି ସ୍ୱାଧୀନତାର ମୂଲ୍ୟ ବଢ଼ାଇ ଅଛଂତି। ଏହି ବାସ୍ତବ ଜଗତ୍‌ରେ ପୂର୍ଣ ଦେବତାଂକର ଉପଲବ୍ଧି କରି, ଏହି ଜଗତ୍‌ର କ୍ରିୟାରାଶି ମଧ୍ୟରେ ମୁକ୍ତି ଲୋଡ଼ିଅଛଂତି। ତାଂକ ଦର୍ଶନମତରେ ଶୂନ୍ୟ ବା ଭ୍ରାଂତିବାଦ ଏତେ ପ୍ରକଟିତ ନୁହେ, କିଂବା ଐହିକ ଜୀବନ ନୀରସ ନୁହେ। ତେଣୁ ସଂସାରସଂଭୋଗ ପ୍ରତି ଆସ୍ଥାବାନ୍ ହୋଇଥିବାରୁ ଗ୍ରୀକ୍‌ସଭ୍ୟତା ପରବର୍ତ୍ତୀ ଯୁଗରେ ସର୍ବତୋମୁଖୀ ବର୍ଦ୍ଧିଷ୍ଣୁ ଇଉରୋପୀୟ ସଭ୍ୟତା ପ୍ରଚାର କରିପାରିଅଛି। ଏଣେ ପ୍ରାଣର ନୀରସତାରେ ଶୁଷ୍କ ଓ ସଂକୁଚିତ ହୋଇ, ଭ୍ରାଂତିମୟ ଜଗତ୍ ମଧ୍ୟରେ ପରମ ମଂଗଳମୟଂକୁ ନ ପାଇ ଭାରତ ଭ୍ରାଂତିରୁ ଭ୍ରାଂତିକୁ ଗତିକରିଅଛି; ସଂଭୋଗ ଓ ବୈଷୟିକତାରେ ଆତ୍ମ-ବିନାଶସାଧନ କରିଅଛି। ଜଗତ୍‌ରେ ଯାହା ଭୋଗ କରିବାକୁ ହେବ, ଯେଉଁସବୁ ପ୍ରାକୃତ କ୍ରିୟାରାଶି ମଧ୍ୟରେ ଜୀବନର ବିକାଶ ସଂପାଦନ କରିବାକୁ ହେବ, ତାହାକୁ ଅପ୍ରାକୃତ ପ୍ରହେଳିକା ବୋଲି ବିଚାରି, ସ୍ୱପ୍ନମୟ ଅଧ୍ୟାତ୍ମ ବା ଅତ୍ୟାତ୍ମ ସାଧନ କରୁ କରୁ ଫଳରେ ବାସ୍ତବ ଜୀବନର ସମସ୍ତ ସ୍ୱତ୍ୱ ଓ ଅଧିକାର ହରାଇଅଛି ଏବଂ ଇତିହାସର ଯୁଗେ-ଯୁଗେ ଅଧିକ ସଂଭୋଗପ୍ରିୟ, ପ୍ରତ୍ୟକ୍ଷ-ବିଶ୍ୱାସୀ; ଅତଏବ କର୍ମତତ୍ପର ଜାତିମାନଂକଦ୍ୱାରା ବାରଂବାର ବିଜିତ ଓ ବିଦଳିତ ହୋଇଆସିଅଛି।

ବାସ୍ତବିକ ଇଉରୋପ ଆଜି ବୈଷୟିକ ଉନ୍ନତିରେ କ୍ଷିପ୍ର ଗତିରେ ଚାଲିଅଛି; ଭାରତବର୍ଷ ଜୀବନର ସେ ବିଭାଗରେ ଟିକିଏ ଶିଥିଳ ହେଲା ପରି ବୋଧହେଉଅଛି। ଭାରତର ଜୀବନ-ଧାରଣା ଓ ଈଶ୍ୱରଭାବ ଆପାତତଃ ସ୍ୱପ୍ନମୟ; ବାସ୍ତବ ଜୀବନରୁ ଟିକିଏ ବିଚ୍ଛିନ୍ନ ହେଲା ପରି ମଧ୍ୟ ବୋଧହୁଏ। ଏଥିରେ ବିଶେଷ ପରୀକ୍ଷା, ଚିଂତା ବା ଘଟଣା ସଂଗେ ସହାନୁଭୂତି ବିନା ଆଲୋଚନା କଲେ, ଭାରତରେ ଜୀବନର ଶୁଷ୍କତା ଓ ସାଧନାରେ ନୀରସତା ଦେଖାପଡ଼ିବା ବିଚିତ୍ର ନୁହେ।

ସମାଲୋଚନାର କ୍ରିୟା ଜଗତ୍‌ରେ ଦୁଇ ପ୍ରକାର ଗତି କରେ— ଗୋଟିଏ ନିରପେକ୍ଷ, ଅପରଟି ନିରଂକୁଶ। ପ୍ରଥମଟିରେ କାରଣ ଅନୁସଂଧାନ କରି ସେଥିରୁ କାର୍ଯ୍ୟ କଳନା କରାଯାଏ; କାରଣ ସବୁ ତନ୍ନତନ୍ନ କରି ପରୀକ୍ଷା କରି, ତହିଁରୁ କାର୍ଯ୍ୟକୁ ଗତି କରିବାକୁ ହୁଏ ଏବଂ ଏପରି କରି କାର୍ଯ୍ୟ-କାରଣ ସଂବଂଧ ଠିକ୍ କରି ନ ପାରିଲେ, କାର୍ଯ୍ୟ ଦେଖି, ତହିଁରୁ ତାହାର କାରଣ ଅନୁମାନ କରି, ସେହି କାରଣକୁ ନିରପେକ୍ଷ ଓ ନିରବଲଂବ ଦୃଷ୍ଟିରେ ଘଟଣାରାଶି ମଧ୍ୟରେ ଅନ୍ୱେଷଣ

ଶୃଙ୍ଖଳା ଓ ସଂଯମର ପ୍ରୟୋଜନ । ଯାହା ଇଚ୍ଛା ତାହା କରିବସିଲେ, ଚଳିବ ନାଇ । ତାହା ସେ କରି, ସଂସାରରେ ସ୍ଥିର ରହିପାରିବ ନାଇ । ତାହାର ଶକ୍ତି ଅନଂତ ନୁହେ । ସବୁ ସ୍ଥାନ ଓ କାଳର ଜ୍ଞାନ ତାର ନାଇ । ତାର ସ୍ୱାତଂତ୍ର୍ୟ ଅଛି ସତ, ବିବେକ ଓ ବିଚାର ଶକ୍ତିରେ ତାହାର ସ୍ୱାଧୀନତା ଅଛି; କିଂତୁ ସେ ସ୍ୱାଧୀନତା ନିରପେକ୍ଷ ସ୍ୱେଚ୍ଛାଚାରିତା ନୁହେ । ଜଗତ୍‌ର ନିତ୍ୟ ନିୟମରେ ତାହା ଶୃଙ୍ଖଳିତ । ଏଣୁ ସାଂତ ମାନବର ଏହି ନିୟମାଧୀନ ସ୍ୱାତଂତ୍ର୍ୟହିଁ ସ୍ୱାଧୀନତା । ଜଗତ୍‌ରେ ସ୍ୱେଚ୍ଛାଚାରୀ ହେବାର ତାର ଅବକାଶ ନାଇ । ସମସ୍ତ ବିଶ୍ୱବ୍ରହ୍ମାଂଡକୁ ଏକ ନିତ୍ୟ ତଂତ୍ରର ଅଧୀନ ବୋଲି ଅନୁଭବ କରି, ମାନବ ନିଜର ସ୍ୱାଧୀନତା ଭୋଗ କରିବ ।

ଆର୍ଯ୍ୟ ବିଶ୍ୱବ୍ରହ୍ମାଂଡକୁ ଏହିପରି ଏକ ତଂତ୍ରର ଅଧୀନ ବୋଲି ଧାରଣା କରି ପାରିଥିଲା । ସେଥିରୁହିଁ ତାର ଧର୍ମଧାରଣା । ସେହି ନିତ୍ୟ ନିର୍ଦ୍ଦିଷ୍ଟ ଅକାଟ୍ୟ ଧର୍ମ-ଧାରଣାରେ ସେ ନିଜର ସମସ୍ତ ସ୍ୱେଚ୍ଛାଚାରିତା ସଂଯତ ରଖିଥିଲା । ସେ ବାସ୍ତବିକ ବୁଝିଥିଲା— "ସହଯଜ୍ଞା ପ୍ରଜାସୃଷ୍ଟ୍ୱା ପୁରୋବାଚ ପ୍ରଜାପତିଃ
ଅନେନ ପ୍ରସବିଷ୍ୟଧ୍ୱ ମେଷ ବୋଽସ୍ତ୍ୱିଷ୍ଟ କାମଧୁକ୍ ।"

ଅର୍ଥାତ୍, ସୃଷ୍ଟି ଆରଂଭରେ ବିଧାତା ଯଜ୍ଞ, ଅର୍ଥାତ୍ କର୍ମ ବା ଧର୍ମ ସହିତ ପ୍ରଜା ସୃଷ୍ଟି କରି କହିଲେ—ଏହି କର୍ମ ବା ଧର୍ମର ନିୟମରେ ରହି ତୁଂଭେ ନିଜର ସ୍ୱାଧୀନତା ଭୋଗକର । ଏହି ଧର୍ମ ତୁଂଭଂକୁ ଈପ୍‌ସିତ ପ୍ରଦାନ କରୁ ।

ଏହିପରି ତାର ବିଶ୍ୱାସ, ପ୍ରାଣୀର ସୃଷ୍ଟି ସଂଗେ ଈଶ୍ୱର କର୍ମର ସୃଷ୍ଟି କରିଅଛଂତି । କର୍ମ ବିନା ଶରୀର ଯାତ୍ରା ଚଳିବ ନାଇ; କିଂତୁ ସମସ୍ତେ କିଛି ଏକା କର୍ମ କରିବେ ନାଇ; କିଂବା ପ୍ରତ୍ୟେକେ ସବୁ କର୍ମ କରି ପାରିବେ ନାଇ । ସେଥିପାଇଁ ବିଧାତା କର୍ମର ବିଭାଗ ମଧ୍ୟ ସୃଷ୍ଟି କରିଅଛଂତି । ଏହି କର୍ମ ବିଭାଗ ବ୍ୟକ୍ତି, ବସ୍ତୁ ବା ସମାଜଗତ ଧର୍ମର ମୂଳାଧାର । ମାନବର ସମାଜଗତ କର୍ତବ୍ୟ ବିଷୟରେ ଭଗବାନ୍ ସ୍ୱୟଂ କହିଅଛଂତି—

"ଚାତୁର୍ବର୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମବିଭାଗଶଃ
ତସ୍ୟ କର୍ତ୍ତାରମପି ମାଂ ବିଦ୍ଧ୍ୟ କର୍ତାରମବ୍ୟୟଃ ।"

ଅର୍ଥାତ୍, ଗୁଣ ତଥା କର୍ମର ବିଭାଗ କରି, ସେହି ଅନୁସାରେ ଚାରିବର୍ଣ୍ଣ; ଅର୍ଥାତ୍ ବ୍ରାହ୍ମଣ, କ୍ଷତ୍ରିୟ, ବୈଶ୍ୟ, ଶୂଦ୍ର ମୁଁ ସୃଷ୍ଟି କରିଅଛି । ଅନାଦି ବିକାରହୀନ ଯେ ମୁଁ— ତାକୁହିଁ ତୁଂଭେ ଏହାର କର୍ତା ବୋଲି ଜାଣ ।

ଭଗବାନ୍ ଅବ୍ୟୟ; ଅର୍ଥାତ୍ ବିକାରହୀନ । କର୍ମ ଓ ଧର୍ମ ବି ସେହିପରି ନିତ୍ୟ, ଅପରିବର୍ତନୀୟ; ଏହା ଆର୍ଯ୍ୟର ବିଶ୍ୱାସ । ଜୀବନରେ ତାହାର ଏହିପରି ଆଦର୍ଶ । ଏହି ଧର୍ମର ସଂଯମରେ, ଏହି ବିଶ୍ୱତଂତ୍ରର ନିତ୍ୟ ଶୃଙ୍ଖଳାରେ ସେ ନିଜର ସ୍ୱାଧୀନତା ଭୋଗ କରେ । ଏଥିରେହିଁ ତାହାର ବିଶୃଙ୍ଖଳ ଇଚ୍ଛାଶକ୍ତି ସଂଯତ ହୁଏ; ତାହାର ଚରିତ୍ର ବିକଶିତ ଓ ପ୍ରତିଷ୍ଠିତ ହୁଏ ।

ତଥାପି ପ୍ରବୃତ୍ତି ମନୁଷ୍ୟର ସ୍ୱାଭାବିକ। "ଇନ୍ଦ୍ରିୟାଣି ପ୍ରମାଥୀନି ହରଂତି ପ୍ରସଭଂ ମନଃ"; ଅର୍ଥାତ୍ ବଳବାନ୍ ଇନ୍ଦ୍ରିୟମାନେ ଜୋର୍ କରି ମନକୁ ଅଧୀନ କରଂତି। ମାନବ ସ୍ୱଭାବତଃ ସ୍ୱେଚ୍ଛାଚାରୀ ହୋଇପଡ଼େ; ସ୍ୱେଚ୍ଛାଚାରିତା ମନୁଷ୍ୟକୁ ଶିଖିବାକୁ ହୁଏ ନାଇ। ସଂଯମ ଦରକାର। କଳ୍ପିତ ଆଦର୍ଶର ସଂଯମ ସବୁବେଳେ ଦୃଢ଼ ନୁହେ। ସେହି ଆଦର୍ଶର ଧାରଣା ବେଳେବେଳେ ଗୋଟିଏ ଅଯଥା ବଂଧନ ପରି ବୋଧ ହୁଏ। ସେ ବଂଧନ ମନୁଷ୍ୟ ଲୋଡ଼େ ନାଇ, ସହେ ନାଇ। ସେଥିପାଇଁ ନିଜେ ନିଜ ନିମଂତେ ବଂଧନ ସୃଷ୍ଟି କରି, ଆଇନ ତିଆରି କରେ। ଆଜି ଭିନ୍ନ ଭିନ୍ନ ଦେଶମାନଂକରେ ସେଥିପାଇଁ ଏତେ ଆଇନ। ରାଜ୍ୟର ଆଇନ, ସମାଜର ଆଇନ, ସଭାର ଆଇନ, ଦୋକାନର ଆଇନ, ଏହିପରି ଆଇନ ନିତି କେତେ ତିଆରି ଲାଗିଚି। ସବୁ ଆଇନ ମନୁଷ୍ୟ କରୁଚି, ପୁଣି ସ୍ୱେଚ୍ଛାଚାରିତାରେ ତାହା ଭାଂଗୁଚି। ଆଇନର କୌଣସି ଆଦର୍ଶ ସ୍ଥିର ରହୁନାଇ। ଉଚ୍ଛୃଙ୍ଖଳ ମାନବ ନିଜ ପାଇଁ ନିଜେ ଆଇନ ତିଆରି କଲେ, ତାହାର ଏହି ଫଳ ହେବ।

କିଂତୁ ଆର୍ଯ୍ୟ-ସଭ୍ୟତାର ନୀତି ସ୍ୱତଂତ୍ର। ଆର୍ଯ୍ୟର ଧର୍ମହିଁ ସବୁ ଆଇନର ମୂଳ; ସବୁ ସଂଯମର କ୍ଷେତ୍ର। ଧର୍ମହିଁ ସ୍ୱାଭାବିକ ସ୍ୱେଚ୍ଛାଚାରିତାର ପରମ ସଂଯମ। ସେହି ଧର୍ମ ତାହାର ନିଜର ତିଆରି ନୁହେ; ଏହା ବିଧାତାଂକର ନିୟମ ଓ ନିଦେର୍ଶ। ଏହି ଧର୍ମ, ଏହି ନିର୍ଦ୍ଦେଶ ବେଦ ଓ ଆପ୍ତବାକ୍ୟରୁ ଜଣାଯାଏ। ବେଦ ଓ ଆପ୍ତବାକ୍ୟ ଆର୍ଯ୍ୟର ଈଶ୍ୱରବାକ୍ୟ। ତାହା ଉପରେ ତର୍କ ନାଇ। ସଂସାର ଓ ସମାଜ ଚଳିବା ପାଇଁ ଆପ୍ତବଚନରେ ଧର୍ମର ଉପଦେଶ ଅଛି। ବେଦ ଯେପରି ଅପୌରୁଷେୟ, ଏହି ଆପ୍ତବାକ୍ୟ ମଧ ନିସର୍ଗ-ପରଂପରାର ଫଳ। ଦ୍ରଷ୍ଟା ସିଦ୍ଧପୁରୁଷମାନଂକର ପାରଂପରିକ ଅନୁଭୂତି ଓ ବିଶ୍ୱାସ ଏହି ଆପ୍ତବାକ୍ୟରେ ପ୍ରକାଶ ପାଇଅଛି।

ତାର୍କିକତାରେ ଆପ୍ତବାକ୍ୟର ନୈସର୍ଗିକତ୍ୱରେ ବିଶ୍ୱାସ ନ କଲେ ମଧ, ତାହା ଯେ ଅପୌରୁଷେୟ ବେଦବଚନ ପରି ଦୃଢ଼, ସ୍ଥିର ଓ ନିତ୍ୟ, ସେଥିରେ ଅବିଶ୍ୱାସ କରିବାର କିଛି ନାଇ। ବିଚାର କରି, ସୂକ୍ଷ୍ମଦର୍ଶୀ ଦୂରଦର୍ଶୀ ମନୀଷୀମାନେ ଅନେକ ଦେଖି, ଯୁଗଯୁଗାଂତର ଅନୁଭବ ଦ୍ୱାରା ତୁଳନା କରି, କିଂବା ପୁରୋଦୃଷ୍ଟିବଳରେ କଳ୍ପନା କରି, ଅଥବା ଘଟଣାର ଅଜ୍ଞାତ ପ୍ରଭାବରେ ଚାଳିତ ହୋଇ, ଫଳାଫଳ ବୁଝି, ଯାହା ନିୟମ ଓ ଧର୍ମ ବୋଲି ନିର୍ଦ୍ଦେଶ କରିଅଛଂତି, ତାହାହିଁ ଆପ୍ତବଚନ। ଏହା ମାନବର ସନାତନ ଅନୁଭୂତିର ଫଳ। ବିଧାତାଂକ ବିଶ୍ୱନିୟମରେ ଯେଉଁ ବିଶାଳ ଶୃଙ୍ଖଳାର ବାଣୀ ପ୍ରତି ମୁହୂର୍ତ୍ତରେ ପ୍ରଚାରିତ ହେଉଅଛି, ଏହା ସେହି ବାଣୀର ଅଜ୍ଞାତ ଉଦ୍ଭେଦ ମାତ୍ର। ବିଶ୍ୱନିୟମ ମାନବଜୀବନର ପରଂପରାରେ ଆପ୍ତବାକ୍ୟରୂପେ ସ୍ୱତଃ ପ୍ରକଟିତ ହୋଇଅଛି।

ତେବେ ଆଉ ସଂଦେହ ରହିଲା କଣ ? ସ୍ୱେଚ୍ଛାଚାରିତା ନିବାରଣ କରିବାପାଇଁ, ସ୍ଥିର ନିୟମରେ ରହି ସଭ୍ୟତା ତଥା ଜୀବନର ବିକାଶ ଓ ବୃଦ୍ଧି ନିମଂତେ ଏ ସଂଯମ-ପଂଥା ଆର୍ଯର ସାମାନ୍ୟ ଅଂତର୍ଦୃଷ୍ଟିର ଫଳ ନୁହେ। ବିଶାଳ ପୁରୋଦୃଷ୍ଟି ମଧ ଜ୍ଞାତ ବା ଅଜ୍ଞାତଭାବରେ ଏଥିରେ ବହୁତ କାର୍ଯ କରିଅଛି। ଯୁଗେ-ଯୁଗେ ମାନବ ମାନବ ରହିବ। କେତେ ସାମାନ୍ୟ ନିୟମ ତାର ସ୍ଥିର ରହିବ। ସେହି ସବୁ ବା ଧର୍ମଙ୍କ ସଂଯମ ମଧରେ ମାନବକୁ ସ୍ୱାଧୀନତା ଭୋଗକରିବାକୁ ହେବ। କି ସୁଂଦର ବ୍ୟବସ୍ଥା !

ଅବଶ୍ୟ ଏପରି ନୀରସ, ବିଶ୍ୱାସହୀନ ତାର୍କିକତାରେ ଆର୍ଯ ନିଜର ଧର୍ମଧାରଣା ତିଆରି କରି ନାଇ। ଏପରି କଲେ, ସୁଂଦର ଓ ସମୀଚୀନ ହେବ ବୋଲି ବିଚାରି, ଧର୍ମର ଆଚରଣରେ ପ୍ରବୃତ୍ତ ହୋଇ ନାଇ। ବିଶ୍ୱତଂତ୍ର ତାହାର ନିଜ କଳ୍ପନା ନୁହେ। ଧର୍ମବଂଧରେ ତାହାର ଅହଂକାର ନାଇ। ବ୍ୟକ୍ତିବିଶେଷର କଳ୍ପିତ ବା ଯୁକ୍ତିପ୍ରସୂତ ବ୍ୟବସ୍ଥାକୁ ସେ କେବେ ଧର୍ମ ବୋଲି ଗ୍ରହଣ କରି ନାଇ। ତାହାର ଧର୍ମଧାରଣାର ବିଶ୍ୱାସ ସ୍ୱାଭାବିକ। ତାହାର ବିଶ୍ୱାସ, ସନାତନ ସୃଷ୍ଟିନିୟମ ପରି ତାହାର ଧର୍ମ ବିଧାତାଂକର ନିର୍ଦ୍ଦେଶ। ଆପ୍ତବାକ୍ୟ ଈଶ୍ୱରବାକ୍ୟ।

ଏହି ସର୍ଗ ତଂତ୍ର ନିୟମହିଁ ଆର୍ଯର ଧର୍ମଧାରଣା ବିଧାତାଂକ ବିଶ୍ୱ-ନିର୍ଦ୍ଦେଶ ପାଳନ ତାହାର କର୍ତ୍ତବ୍ୟ। ବିଶ୍ୱ ସଂଗେ ସେ ଏହି ଧର୍ମବଳରେ ଏକ। ଏହି ଧର୍ମବଳରେହିଁ ତାର ବିଶ୍ୱ-ସର୍ଗରେ ଯଥାର୍ଥ ଉପଯୋଗିତା। ଏହା ତାହାର ନିଜର ପରମ କଲ୍ୟାଣ। ଏଥିରେହିଁ ତାର ଆତ୍ମପ୍ରସାଦ ଓ ଚରମ ଶାଂତି। ବିଶ୍ୱତଂତ୍ରର ସୁନିୟତ ଚାଳନା ମାନବର ମୁକ୍ତିମାର୍ଗ। ବିଶ୍ୱତଂତ୍ରରେ ନିଜର ପ୍ରତିଷ୍ଠା ଆର୍ଯର ପରମ ପଦ।

□□□

## ଚତୁର୍ଥ ଅଧ୍ୟାୟ

## ଆର୍ଯ୍ୟ ଜୀବନର ମୂଳାଧାର — ଆଧ୍ୟାତ୍ମିକତା

ଆର୍ଯ୍ୟର ଧର୍ମ ସନାତନ। ଏହା ଅନନ୍ତ ସୃଷ୍ଟି-ତନ୍ତ୍ରର ଅଂଗୀଭୂତ। ବିଶ୍ୱସଂସାରରେ ପ୍ରତ୍ୟେକ ବସ୍ତୁ, ଜନ୍ତୁ, ବ୍ୟକ୍ତିର ଯେ ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ ଅଛି, ଅଜ୍ଞାତ ବିଶ୍ୱପ୍ରେରଣାରେ ମାନବ ଯେ କର୍ତ୍ତବ୍ୟରେ ପ୍ରଚୋଦିତ ଓ ପ୍ରେରିତ ହେଉଅଛି, ତାହାହିଁ ତାହାର ଧର୍ମ। ଆର୍ଯ୍ୟ ବୈଦିକ ଉପାସନାରେ କହେ—

"ତତ୍ସବିତୁର୍ବରେଣ୍ୟଂ ଭର୍ଗୋଦେବସ୍ୟ ଧୀମହି,
ଧିୟୋ ଯୋ ନଃ ପ୍ରଚୋଦୟାତ୍।"

ଅର୍ଥାତ୍, ଅନନ୍ତ ବିଶ୍ୱର ପ୍ରସବିତା ଯେଉଁ ବିଧାତା ଆମ୍ଭମାନଙ୍କର ବୁଦ୍ଧି ଇଂଗିତରେ ଚାଳନ କରନ୍ତି, ସେହି ବିଧାତାଙ୍କର ମହନୀୟ ଦୀପ୍ତିକୁ ମୁଁ ଧ୍ୟାନ କରୁଅଛି।

ସମସ୍ତ କାର୍ଯ୍ୟରେ ଆର୍ଯ୍ୟର ବିଶ୍ୱାସ, ସେ ବିଶ୍ୱବିଧାତାଙ୍କର ପ୍ରେରଣା ଲଭୁଅଛି। ବିଶ୍ୱବିଧାତା ସମସ୍ତ ସର୍ଗତନ୍ତ୍ର ଇଂଗିତରେ ଚଳାଉଛନ୍ତି। ମାନବ-ପ୍ରାଣରେ ତାଙ୍କରି ମହିଷ୍ଟ ଇଂଗିତରେ କର୍ମପ୍ରବାହ ପ୍ରକଟିତ ହୁଏ। ମନୁଷ୍ୟର କର୍ତ୍ତବ୍ୟ ସେହି ବିଶ୍ୱତନ୍ତ୍ର ନିୟମର ଅଂଗୀଭୂତ। ମାନବ ବିଶ୍ୱତନ୍ତ୍ରରୁ ବିଚ୍ଛିନ୍ନ ନୁହେ। ସେହି ବିଶ୍ୱତନ୍ତ୍ର ମଧ୍ୟରେ ତାହାର ନିର୍ଦ୍ଦିଷ୍ଟ ସ୍ଥାନ। ସେହି ବିଶ୍ୱତନ୍ତ୍ରର ପରିଚାଳନା ଅକ୍ଷୁଣ୍ଣ ରଖିବାରେ ତାହାର ପରମ ଆତ୍ମଲାଭ। ବିଶ୍ୱନିୟମ ଓ ବିଶ୍ୱଧର୍ମରେ ତାହାର ଯେ ଆସ୍ଥା, ଯେ ବିଶ୍ୱାସ; ନିଜର ଧର୍ମ, ନିଜର କର୍ତ୍ତବ୍ୟରେ ତାହାର ସେହି ଆସ୍ଥା, ସେହି ବିଶ୍ୱାସ। ଏହିପରି ସମସ୍ତ ବିଶ୍ୱ ଭିତରେ ତାହାର ନିଜତ୍ୱ ଓ ନିଜ ଭିତରେ ବିଶ୍ୱୈକତ୍ୱ। ବିଶ୍ୱର ନିତ୍ୟ ନିୟମରେ ତାହାର ଅବିଚଳିତ ବିଶ୍ୱାସ। ଏଥିରୁହିଁ ତାହାର ଧର୍ମଧାରଣା ଓ କର୍ତ୍ତବ୍ୟଜ୍ଞାନ। ଏହି ବିଶ୍ୱ-ନିୟମରେ ବିଶ୍ୱାସ ଆର୍ଯ୍ୟର ଆଧ୍ୟାତ୍ମିକତା ପ୍ରମାଣ କରୁଅଛି; ଆର୍ଯ୍ୟ-ହୃଦୟର ବିସ୍ତୀର୍ଣ୍ଣତା ସାବ୍ୟସ୍ତ କରୁଅଛି। ପୂର୍ବ ଅଧ୍ୟାୟରେ ଧର୍ମ ସଂପର୍କରେ ଏଥିପ୍ରତି ଲକ୍ଷ୍ୟ କରାଯାଇଅଛି।

ପରକୁ ପ୍ରେମ କରିବା ଯେ ମାନବର ଧର୍ମ, ଏହା ସର୍ବବାଦିସମ୍ମତ। ପରପାଇଁ ଆତ୍ମୋତ୍ସର୍ଗ କରିବାରେ କେବଳ ମହାପ୍ରାଣ ମାନବମାନେ ସମର୍ଥ ହୁଅଂତି। ଜୀବନର ଯଥାର୍ଥ ଧାରଣା ଯାହାର ଯେତେ ଦୃଢ଼, ସେ ସେତେ

ପରର ଦୁଃଖ, ପରର ସଂତୋଷ ନିଜ ମଧ୍ୟରେ ଦେଖିପାରେ। କିଏ ପରିବାର ପାଇଁ, କିଏ ସମାଜ ପାଇଁ, କିଏ ଦେଶ ପାଇଁ ଆତ୍ମୋତ୍ସର୍ଗ କରି କୃତାର୍ଥ ହୁଏ; ନିଜର ଧର୍ମ ପାଳନ କରେ; କିଂତୁ ଆର୍ଯ୍ୟର ଧର୍ମଧାରଣା କେବଳ ପରିବାର, ସମାଜ, ଜାତି ବା ଦେଶ ପାଇଁ ନୁହେ। ପୁଣି ଏହା ଏକା ମାନବଜାତି ପାଇଁ ବି ନୁହେ। ଏହା ଯାବତୀୟ ବିଶ୍ୱ-ବ୍ରହ୍ମାଂଡ ନିମଂତେ; ସମସ୍ତ ସୃଷ୍ଟ ବସ୍ତୁରେ ପରିବ୍ୟାପ୍ତ।

ଏ ବ୍ୟାପ୍ତିର ଧାରଣା ଆର୍ଯ୍ୟର ଏତେ ଦୃଢ଼ ଯେ, ମରଣରେ ମଧ୍ୟ ତାହାର ଆତ୍ମୋତ୍ସର୍ଗ ଅଛି ବୋଲି ସେ ମନେ କରେ ନାଇ। ଆଧ୍ୟାତ୍ମିକ ଆର୍ଯ୍ୟପକ୍ଷରେ ମରଣ ଗୋଟିଏ ସାଧାରଣ ବିଶ୍ୱତଂତ୍ରର ଘଟଣା ମାତ୍ର। ମରଣରେ ଆତ୍ମାର ଉତ୍ସର୍ଗ ନାଇ। ଜନ୍ମ ମରଣ ମଧ୍ୟରେ ମାନବାତ୍ମାର କ୍ରିୟାପ୍ରବାହ ସମାନ ଲାଗିରହିଅଛି। ଧର୍ମ ରଖି କର୍ତ୍ତବ୍ୟପାଳନରେ ମରିବା ଉନ୍ନତ ଜୀବନର ବ୍ୟବସ୍ଥା ମାତ୍ର। ସେଥିପାଇଁ ତାହାର ବିଶ୍ୱାସ, ଜନ୍ମ ପରେ ଜନ୍ମ ଲାଗିରହିଅଛି। ଜୀବନର ଧାରା ଓ ବ୍ୟକ୍ତିତ୍ୱ ମରଣରେ ପରିସମାପ୍ତ ନୁହେ। କର୍ମର ଫଳ ଭୋଗ କରିବାପାଇଁ ମନୁଷ୍ୟ, ଜଂତୁ, ବୃକ୍ଷ, ଏପରି କି ଜଡ଼ ପର୍ଯ୍ୟଂତ, ସର୍ବତ୍ର ଏକ ଜୀବନଧାରା ଅନବଚ୍ଛିନ୍ନ ଭାବରେ ଗତି କରିପାରେ। କର୍ମ-ଭୋଗ ନିମଂତେ ସର୍ବତ୍ର ଆତ୍ମାର ଜନ୍ମ ହୋଇପାରେ। କର୍ମଫଳରେ ମନୁଷ୍ୟ ସ୍ୱେଦଜ ହୁଏ; ମଶକ ମାନବ ହୁଏ; ଶୂଦ୍ର ବ୍ରାହ୍ମଣ ହୁଏ, ବ୍ରାହ୍ମଣ ମ୍ଳେଚ୍ଛ ହୁଏ— ଏପରି କି ଜୀବ ଜଡ଼ ହୁଏ; ଜଡ଼ ପୁଣି ଚେତନ ହୁଏ।

ସଂସାର ଅନଂତ। ଆତ୍ମା ସର୍ବବ୍ୟାପୀ। ଏହି ଜଗତ୍‌ରେ ଅନଂତକାଳ ମଧ୍ୟରେ ଦେହଗତ ଆତ୍ମାର ଫଳଭୋଗ ଲାଗିଅଛି। ଚାର୍ବାକବାଦ ବା ଅସଭ୍ୟ ମାନବର ମତ ପରି ମୃତ୍ୟୁରେ ଆତ୍ମାର ବିନାଶ ନାଇ। ଖ୍ରୀଷ୍ଟାନ୍ ପ୍ରଭୃତି ଧର୍ମ ପରି, ପ୍ରମାଦମୟ କ୍ଷଣସ୍ଥାୟୀ ମରଜୀବନର କାର୍ଯ୍ୟ ନିମଂତେ ମୃତ୍ୟୁ ପରେ ଅନଂତ-କାଳବ୍ୟାପୀ ସ୍ୱର୍ଗସୁଖ ବା ନରକଯଂତ୍ରଣାର ବିଧାନ ନାଇ। କର୍ମର ଫଳ ଏହି ସଂସାରରୁ ଭିନ୍ନ ସ୍ୱର୍ଗ ବା ନରକରେ ଭୋଗ କରିବାକୁ ହୁଏ ନାଇ; ସମସ୍ତ କର୍ମ-ଭୋଗ ଏହି ସଂସାର ମଧ୍ୟରେ। ଏହିଠାରେ ଜନ୍ମଜନ୍ମାଂତରରେ ଧର୍ମର ଅନୁବୃତ୍ତି ଓ କର୍ମର ପରିପାକ।

ଗୋଟିଏ ଜୀବନର ସୁଖ ଦୁଃଖ ଘେନି ଆର୍ଯ୍ୟ ବିବ୍ରତ ନୁହେ। ଜଡ଼ଠାରୁ ଚେତନ ପର୍ଯ୍ୟଂତ, ମଶକଠାରୁ ମାନବ ପର୍ଯ୍ୟଂତ, କେହି ଆର୍ଯ୍ୟର ହେୟ ନୁହେ। ତେଣୁ ମରଣକୁ ଆର୍ଯ୍ୟର ଲେଶ ଭୟ ନାଇ। ବିଶ୍ୱନିୟଂତାଂକ ରାଜ୍ୟରେ ସମସ୍ତେ ଏକ ପରିବାରର କୁଟୁଂବ। ସମସ୍ତଂକ ଜୀବନ ଅନଂତ। କର୍ମବଳରେ ତାହାର ଆପାତ ଉନ୍ନତି ବା ପତନ। ସେ କର୍ମ ବିପାକର ନିୟଂତା ପରମେଶ୍ୱର। ମନୁଷ୍ୟର ସେଥିରେ କିଛି ନାଇ। କର୍ମ କେତେକ ପରିମାଣରେ ମନୁଷ୍ୟ

ହାତରେ ଅଛି ସତ, ମନୁଷ୍ୟ ନିର୍ଦ୍ଦିଷ୍ଟ ବିଶ୍ୱବିଧାନର ମାର୍ଗ ଅବଲଂବନ କରି କର୍ମରେ ସ୍ୱାଧୀନତା ଭୋଗ କରୁଅଛି ସତ; କିଂତୁ ଏହି ସ୍ୱାଧୀନତାରେ ନିତ୍ୟ-ନିୟମ ଭଂଗ କଲେ ସୃଷ୍ଟିତଂତ୍ରରେ ବ୍ୟଭିଚାର ହୁଏ। ସେ କର୍ମ କରିଯାଏ; କିଂତୁ ସେ କର୍ମର ଅନିବାର୍ଯ୍ୟ ବିପାକ ନିର୍ଦ୍ଦିଷ୍ଟ ଓ ସ୍ଥିର। ମନୁଷ୍ୟ ପରମପିତାଂକର ଏହି ନିର୍ଦ୍ଦିଷ୍ଟ ଧର୍ମପଥରେ ରହି କର୍ମ କରିବ। ନିଜର ନିତ୍ୟ କର୍ତ୍ତବ୍ୟରେ ପ୍ରତିଷ୍ଠିତ ରହି ମାନବୀୟ ସ୍ୱାଧୀନତା ଭୋଗ କରିବ। ଧର୍ମର ବିଧାତା, ଜଗଦ୍-ପରିବାର, ବିଶ୍ୱପିତା, ଜଗନ୍ନିୟଂତା କର୍ମ ସଂଗେ ଫଳର ଯୋଗ ଘଟାଇବେ।

ଆର୍ଯ୍ୟ-ପ୍ରାଣର ଏ ଉଦାରତା ନିରଂକୁଶ। ନିଜ ଜୀବନର କ୍ରିୟା ପର୍ଯ୍ୟାଲୋଚନା କଲାବେଳେ, ସେ ସମସ୍ତ ବିଶ୍ୱକୁ ନିଜ କାର୍ଯ୍ୟରେ ପ୍ରତିବିଂବିତ ଦେଖେ ଏବଂ ନିଜ କାର୍ଯ୍ୟରେ ସମସ୍ତ ବିଶ୍ୱ ପ୍ରଭାବିତ ବୋଲି ଅନୁଭବ କରେ। ସୃଷ୍ଟିତଂତ୍ରରେ ନିଜର ଯଥାର୍ଥ ସ୍ଥାନ ସ୍ଥିର କରିବାହିଁ ତାହାର ଧର୍ମ, ତାହାର ମାନବତା। ସେ ନିଜେ ବିଶ୍ୱତଂତ୍ରର ପରିଚାଳନାରୁ ଭିନ୍ନ ନୁହେ। ତାହାର କ୍ରିୟାରେ ବିଶ୍ୱ-ବିଧାନ ବ୍ୟାହତ ହେବା ଉଚିତ ନୁହେ। ବିଶ୍ୱମୟ ସମସ୍ତେ ନିଜ ନିଜର କ୍ରିୟାରେ ଯେପରି ନିର୍ଦ୍ଦିଷ୍ଟ, ମାନବ ମଧ୍ୟ ନିଜର କ୍ରିୟାରେ ସେହିପରି ସ୍ଥିରଭାବରେ ନିୟୋଜିତ। ବିଶ୍ୱ-ଜଗତ୍‌ରେ ବଡ଼ ସାନ ନାଇ, ଉତ୍କର୍ଷ ଅପକର୍ଷ ନାଇ, ଆଦର ଓ ଘୃଣା ନାଇ। ସମସ୍ତେ ନିଜନିଜ ସ୍ଥାନର ଯଥାର୍ଥ ଉପଯୋଗୀ। ଯେ ଯାହାର ନିର୍ଦ୍ଦିଷ୍ଟ କର୍ମ କରି ଫଳଭୋଗ କରୁଅଛଂତି। ସର୍ବତ୍ର ଏକ ବିଧାନ— ଏକ ନୀତି।

ଅତଏବ ଉଦାର ଆର୍ଯ୍ୟର ବିଶ୍ୱାସ, ଲୋଷ୍ଟ୍ର ଯେ ବିଧାନରେ ତଳକୁ ପଡ଼େ, ରାଜା ସେହି ବିଧାନରେ ପ୍ରଜାରଂଜନ କରି ଲୋକପାଳନ କରଂତି; ବ୍ରାହ୍ମଣ ଜ୍ଞାନଚର୍ଚ୍ଚାରେ ଆତ୍ମୋତ୍ସର୍ଗ କରେ; କ୍ଷତ୍ରିୟ ଧନପ୍ରାଣସଂକଟରେ ସଂଗ୍ରାମ କରେ; ଶୂଦ୍ର ସେବା କରି କୃତାର୍ଥ ହୁଏ। ପ୍ରତ୍ୟେକେ ନିଜନିଜର ସ୍ଥିର କର୍ତ୍ତବ୍ୟରେ ରହି, ବିଧାତାଂକର ମଂଗଳମୟୀ ଇଚ୍ଛା ପୂର୍ଣ୍ଣ କରୁଅଛଂତି। ସମସ୍ତେ ନିଜ ନିଜ ଧର୍ମରେ ଅନଂତ ବିଶ୍ୱତଂତ୍ରରେ ଗୋଟିଏ ଗୋଟିଏ ଆବଶ୍ୟକୀୟ ଉପାଦାନ। କେହି ନିରର୍ଥକ ନୁହେ କିଂବା ସ୍ୱତନ୍ତ୍ର ଭାବରେ କାହାରି କିଛି ଅର୍ଥ ବା ମୂଲ୍ୟ ନାଇ। ସମସ୍ତେ ଅବିରତ ଆଂତରିକତା ସହିତ କାର୍ଯ୍ୟ କରୁଅଛଂତି; କିଂତୁ କେହି କେବଳ ନିଜ ପାଇଁ କର୍ମ କରୁନାହାଂତି। କେହି ସ୍ୱତଂତ୍ର ଭାବରେ କର୍ମର ଫଳ ଭୋଗ କରିବାର ବାସନା ରଖି ନାଇ। ନିଜ ନିଜ ଧର୍ମରେ ସମସ୍ତେ ସେହି ପରମ ମଂଗଳମୟ ବିଶ୍ୱପିତାଂକ କ୍ରିୟାହିଁ ସମାଧାନ କରୁଅଛଂତି। ସମସ୍ତେ କର୍ମ କରୁଅଛଂତି; କିଂତୁ ସେ କର୍ମରେ କେହି ସ୍ୱାତଂତ୍ର୍ୟ ରଖିନାହାଂତି। କୌଣସି ବ୍ୟକ୍ତିଗତ କାମନାରେ ପରିଚାଳିତ ହୋଇ କେହି କର୍ମ କରୁନାହାଂତି। ଏହାହିଁ ଆର୍ଯ୍ୟର ନିଷ୍କାମ କର୍ମ। ଭଗବାନ୍ କହିଅଛଂତି— "ମୟ୍ୟେବ ମନ ଆଧସ୍ୱ ମୟି ବୁଦ୍ଧିଂ ନିବେଶୟ।" ଅର୍ଥାତ୍, 'ମନ ମୋହରିଠାରେ ଅର୍ପଣ କର, ମୋରିଠାରେ ବୁଦ୍ଧି ନିବେଶ

କର।’ “ମର୍ଯ୍ୟର୍ପିତ ମନୋବୁଦ୍ଧି ର୍ଯୋମେ ଭକ୍ତଃ ସ ମେ ପ୍ରିୟଃ!” ଅର୍ଥାତ୍, ସବୁ କାର୍ଯରେ ମୋ’ଠିଠାରେ ମନବୁଦ୍ଧି ଯେ ଅର୍ପଣ କରେ, ସେହି ମୋର ଭକ୍ତ, ସେହି ମୋର ପ୍ରିୟ। ସ୍ୱାଧୀନଭାବରେ କର୍ମର ଅନୁଷ୍ଠାନ କରିବ; କିନ୍ତୁ ସବୁବେଳେ ଲକ୍ଷ୍ୟ ସେହି ବିଧାତା, ସେହି ବ୍ରହ୍ମଜ୍ୟୋତି।

ନିର୍ଦ୍ଦିଷ୍ଟ କର୍ମହିଁ ଧର୍ମ। ସେହି କର୍ମ ‘ବ୍ରହ୍ମୋଭବ’; ଅର୍ଥାତ୍ ବେଦରୁ ଜାତ ବା ବିଧାତାଂକର ନିଦେଶ। କର୍ମରେ ଏ ବିସ୍ତୀର୍ଣ ବିଶ୍ୱାସ ଆର୍ଯ ଭିନ୍ନ ଆଉ କେହି କାର୍ଯରେ ପ୍ରମାଣ କରି ନାଇ। ସମସ୍ତ କର୍ମ କରିବାକୁ ହେବ; ସବୁବେଳେ ଜ୍ଞାନ, ଏ କର୍ମ ବିଧାତାଂକ ନିମଂତେ, ବିଶ୍ୱ-ପରିବାରର ପିତା, ବିଧାତା ଯାହାହିଁ ଆଦେଶ କରୁଅଛଂତି, ମୁଁ ତାହାହିଁ କରୁଅଛି। ମୁଁ ମୋର କର୍ମାଚରଣ କରୁଅଛି, କର୍ମର ଫଳ ଯାହା ହେଉ, ସେଥିରେ ମୋର କିଛି ନାଇ। ମୋର ଏହା ଧର୍ମ, ମୁଁ ଏହା କଲେ ବିଧାତାଂକର ଇଚ୍ଛା ପୂର୍ଣ ହେବ। ଆଉ ଫଳ ଖୋଜିବାରେ ମୋର ପ୍ରୟୋଜନ ନାଇ। ଭଗବାନ୍ କହିଅଛଂତି—

“କର୍ମଣ୍ୟେବାଧିକାରସ୍ତେ ମାଫଳେଷୁ କଦାଚନ
ମାକର୍ମ ଫଳହେତୁର୍ଭୂର୍ମାତେ ସଙ୍ଗୋଽସ୍ତ୍ୱକର୍ମଣି।”

ଅର୍ଥାତ୍, ହେ ମାନବ, କର୍ମରେ ତୋର ଅଧିକାର; ଫଳରେ ନୁହେ। ଫଳ କଣ ହେବ, ଏ କଥା ଭାବି କର୍ମରେ ପ୍ରବୃତ୍ତ ହୁଅ ନାଇ, କିଂବା ଅକର୍ମ ଆଚରଣ କର ନାଇ।

ଫଳ ଭାବି କର୍ମ କଲେ, ନିଜର ଧର୍ମ ଛାଡ଼ି ଅକର୍ମ କରିବାର ଆଶଂକା ଅଛି। ଦୃଷ୍ଟାଂତ ସ୍ୱରୂପ, କ୍ଷତ୍ରିୟ ଯଦି ଭାବେ, ‘ମୁଁ କାହିଁକି ଯୁଦ୍ଧ କରିବି? ହୁଏତ ମୋତେ ନରହତ୍ୟା କରିବାକୁ ହେବ, କିଂବା ମୋର ପ୍ରାଣ-ବିନାଶ ହେବ, ଏ ଯୁଦ୍ଧରେ ମୋର କି ଲାଭ?’ ତେବେ ସେ ଧର୍ମରୁ ସ୍ଖଳିତ ହେଲା; ସେ ଅକର୍ମ କଲା। ସେଥିପାଇଁ କର୍ମର ଫଳ ଗଣନାରେ ମନୁଷ୍ୟର ବୃଥା ଅହଂକାର ପାଇଁ ଆର୍ଯଧର୍ମରେ ଅବକାଶ ନାଇ। ଫଳ ଯାହା ହେଉ, ଧର୍ମ ନିମଂତେ କର୍ମ ତାକୁ କରିବାକୁ ହେବ।

ଏସବୁ ଧର୍ମ-ଧାରଣା ଓ କର୍ମବାଦ ଆର୍ଯର ଦର୍ଶନମତ ନୁହେ। ତାହାର ଦୈନଂଦିନ ଅଭ୍ୟାସରେ ଏହାହିଁ ଦେଖାଯାଏ। ସେ ସବୁବେଳେ ସମସ୍ତ ବିଶ୍ୱତଂତ୍ର ମଧ୍ୟରେ ନିଜକୁ ଅନୁଭବ କରୁଅଛି; ବିଶ୍ୱାସରେ ବିଧାତାଂକ ପାଇଁ କର୍ମାଚରଣ କରିଯାଉଅଛି। ସବୁବେଳେ ସେ ଅନୁଭବ କରୁଅଛି— “ଈଶାବାସ୍ୟମିଦଂ ସର୍ବଂ ଯତ୍ କିଂଚ ଜଗତ୍ୟାଂ ଜଗତ୍।”

ଅର୍ଥାତ୍, ଏ ଜଗତ୍‌ରେ ଯାହା କିଛି ଅଛି, ସବୁ ପରମାତ୍ମାଂକ ଦ୍ୱାରା ଆଚ୍ଛାଦିତ ରହିଅଛି। ମନୁଷ୍ୟ, ପଶୁ, ପକ୍ଷୀ, ଚରାଚର, ସବୁଥିରେ ସେହି ପରମାତ୍ମା ବିରାଜିତ ରହିଅଛଂତି।

ତେଣୁ ଜଗତ୍‌ର ପ୍ରତ୍ୟେକ କ୍ରିୟା, ତଥା ନିଜର ପ୍ରତ୍ୟେକ ଅଂଗଚାଳନାରେ ଆର୍ଯ୍ୟ ସେହି ପରମାତ୍ମାଙ୍କୁ ବିଧାତା-ଜ୍ଞାନରେ ଦେଖୁଅଛି। ତାହାର ଦୈନଂଦିନ କାର୍ଯ୍ୟ ଅନୁସଂଧାନ କଲେ ମଧ ତାହାହିଁ ଦେଖାଯାଏ। ବୈଦିକ ଋଷି ଦେବତାଂକୁ ଦାନ ନ କରି ସୋମରସ ପିଅଂତି ନାଇ। ବୈଦିକ ଆର୍ଯ୍ୟସଂତାନ ଈଶ୍ୱରଭାବ ଛାଡ଼ି କୌଣସି କାର୍ଯ୍ୟ କରେ ନାଇ। ବସିବା, ଶୋଇବା, ଖାଇବା, ଉଠିବା, ଗାଧୋଇବା, କାର୍ଯ୍ୟ କରିବାଠାରୁ ବିଦ୍ୟାଧ୍ୟୟନ କରିବା, ରାଜ୍ୟ-ଶାସନ କରିବା, ଜନସେବା କରିବା ପର୍ଯ୍ୟଂତ ସମସ୍ତ କାର୍ଯ୍ୟରେ ତାହାର ଈଶ୍ୱର। ସେଥିପାଇଁ କେବଳ ଧର୍ମପ୍ରାଣ, ଅଧ୍ୟାତ୍ମସଂବଳ ଆର୍ଯ୍ୟର ପ୍ରାର୍ଥନା-ସମାଜ ନାଇ, ଗିର୍ଜା ନାଇ, କି ଉପାସନା-ମଂଦିର ନାଇ। ଜୀବନର ପ୍ରତି କାର୍ଯ୍ୟ, ଏପରି କି ପ୍ରତ୍ୟେକ ନିଃଶ୍ୱାସଚାଳନରେ ଯେ ଈଶ୍ୱର-ସତ୍ତା, ପରମାତ୍ମାଂକ ନିତ୍ୟ ଅସ୍ତିତ୍ୱ ଅନୁଭବ କରୁଅଛି, ପ୍ରତି କ୍ଷଣରେ ଯାହାର ଜୀବନ ଈଶ୍ୱର-ଭାବମୟ, ତାହାର ବଂଧା-ଗତରେ ଈଶ୍ୱରସ୍ମରଣ ବା ଉପାସନା କରିବା ଆବଶ୍ୟକ ହୋଇ ନାଇ।

ଆର୍ଯ୍ୟର ଧାରଣା, ଈଶ୍ୱର ସର୍ବବ୍ୟାପୀ। ଅନଂତ ବିଶ୍ୱତଂତ୍ର ଈଶ୍ୱରରେ ଜୀବଂତ ଓ ଚାଳିତ। ବିଶ୍ୱଜଗତ୍ ତାଂକର ବିଗ୍ରହ, କ୍ରିୟାରାଶି ତାଂକର ଇଂଗିତ। ସେ ସବୁବେଳେ ସର୍ବତ୍ର ଈଶ୍ୱରହିଁ ଦେଖୁଅଛି। ସାଧାରଣ ଲୋକଂକର ମନର ଦୃଢ଼ତା ଓ ଭାବର ସ୍ଥାୟିତ୍ୱ ପାଇଁ ଯେକୌଣସି କାଠ, ପଥର ବା ଦେବମୂର୍ତ୍ତି ଈଶ୍ୱର ହୋଇପାରଂତି। ସେ ତାହା ଯେତେବେଳେ ଇଚ୍ଛା ସେତେବେଳେ ପୂଜା କରିପାରେ। ଘରେ ଦେବମୂର୍ତ୍ତି ରଖି ଗୃହସ୍ଥ ପ୍ରତ୍ୟେକ କାର୍ଯ୍ୟରେ ଈଶ୍ୱର-ସ୍ମରଣ ଦୃଢ଼ୀଭୂତ କରିପାରଂତି। ଆର୍ଯ୍ୟ-ସଂତାନର ସେଥିରେ ଧର୍ମନାଶ ହୁଏ ନାଇ। ପ୍ରତି ବେଳେ, ପ୍ରତି କର୍ତ୍ତବ୍ୟରେ ଯାହାର ଈଶ୍ୱର, ତାହାର ରବିବାର ବା କୌଣସି ନିର୍ଦ୍ଦିଷ୍ଟ ଦିନରେ ବା ନିର୍ଦ୍ଦିଷ୍ଟ ସ୍ଥାନ ବା ବିଧାନରେ ଈଶ୍ୱରପୂଜା କରିବାର ପ୍ରୟୋଜନ ନାଇ। ଆର୍ଯ୍ୟ ସଂତାନର ସେ ପ୍ରୟୋଜନ କେବେ ହୋଇ ନାଇ। ଲୋକ-ବ୍ୟବହାରରେ ମୂର୍ତ୍ତିପୂଜା ଚଳିପାରେ, ଭକ୍ତିରେ ଦେବତାଂକୁ ନିଜ ପରି ବସ୍ତ୍ରାଳଂକାରରେ ଭୂଷିତ କରାଯାଇପାରେ; ଏପରି କି ବଳି ପର୍ଯ୍ୟଂତ ମଧ ଦିଆଯାଇପାରେ; ସେଥିପାଇଁ ଆର୍ଯ୍ୟର ବିଧି ବିଧାନ, ନିଷେଧ ବିଶେଷ କିଛି ନାଇ। କୌଣସି କଟକଣାର ବ୍ୟବସ୍ଥା ନାଇ। ବ୍ୟବସ୍ଥା ଅଛି କେବଳ—

"ଯେ ଯଥା ମାଂ ପ୍ରପଦ୍ୟନ୍ତେ ତାଂ ତଥୈବ ଭଜାମ୍ୟହଂ
ମମବର୍ତ୍ମାନୁବର୍ତ୍ତନ୍ତେ ମନୁଷ୍ୟାଃ ପାର୍ଥ ସର୍ବଶଃ।"

ଅର୍ଥାତ୍, ଯେ ମତେ ଯେ ରୂପରେ ପାଇବାକୁ ଇଚ୍ଛା କରଂତି, ମୁଁ ତାଂକୁ ସେହି ରୂପରେ ପ୍ରାପ୍ତ ହୁଏ। ସବୁ ମତରେ ମନୁଷ୍ୟମାନେ ମୋ'ରି ନିର୍ଦ୍ଦିଷ୍ଟ ମାର୍ଗ ଅନୁବର୍ତନ କରୁଅଛଂତି।

ଏହା ଭଗବାନ୍ ନିଜେ କହିଅଛଂତି, ପୁଣି କହିଅଛଂତି, "ଯେ ମୋତେ ଶ୍ରଦ୍ଧାରେ ଯାହା ଦିଏ, ମୁଁ ତାର ଶ୍ରଦ୍ଧା ବୋଲି ତାକୁ ଗ୍ରହଣକରେ।"

ଭଗବାନ୍ ସର୍ବତ୍ର ଅଛଂତି। ତାଂକର ସ୍ଥାନ, କାଳ, ନାମ, ରୂପ ନାଇ। ସମସ୍ତ ସ୍ଥାନ, କାଳ, ନାମ, ରୂପ ତାଂକରି ଇଂଗିତରେ, ତାଂକରି ଆଦେଶରେ ବର୍ତମାନ; ତାଂକରି ବ୍ରହ୍ମଜ୍ୟୋତିରେ ପୂର୍ଣ। କୌଣସିଠାରେ ଭେଦ କରିବା ପାପ।

"ଯଃ ସର୍ବଜ୍ଞଃ ସର୍ବବିତ୍ ଯସ୍ୟ ଜ୍ଞାନମୟଂ ତପଃ
ତସ୍ମାଦେତଦ୍ ବ୍ରହ୍ମନାମ ରୂପମନ୍ନଂ ଚ ଜାୟତେ।"

ଅର୍ଥାତ୍, ଯେ ସବୁ ଜାଣଂତି, ସବୁ ଅନୁଭବ କରଂତି, ଯାହାଂକର କ୍ରିୟା ଜ୍ଞାନମୟ, ଏସବୁ ନାମ-ରୂପାଦି ତାଂକରିଠାରୁ ଜାତ।

ସବୁ ତାଂକରି ସ୍ୱରୂପରେ ପୂର୍ଣ। ସେଥିପାଇଁ ଆର୍ଯ କୌଣସିଠାରେ ଭେଦଜ୍ଞାନ କରି ନାଇ। କୌଣସିଠାରେ ଈଶ୍ୱରାରୋପ କଲେ, ତାର ଘୃଣା ବା ଅନାଦର ହୁଏ ନାଇ। କୌଣସି ପ୍ରକାର ଲୋକବ୍ୟବହାରରେ ସେ ଧର୍ମହାନିର ଭୟ କରେ ନାଇ। ଯେ ଯେପରି ଭାବରେ ଉପାସନା ବା ପୂଜା କରୁ ନା କାହିଁକି, ନିଜର ଧର୍ମରେ ଥାଇ, ପ୍ରତ୍ୟେକ କାର୍ଯରେ ଈଶ୍ୱର-ସ୍ମରଣ କରିବା, ଜଗତ୍‌ମୟ ଈଶ୍ୱର ସତ୍ତା ଅନୁଭବ କରି ନିର୍ଦ୍ଦିଷ୍ଟ କର୍ମରେ ପ୍ରବୃତ୍ତ ହେବା ଆର୍ଯର ଉଦ୍ଦେଶ୍ୟ। ସମସ୍ତ କର୍ମଫଳ ଈଶ୍ୱରରେ ଅର୍ପଣ କରି, ଆର୍ଯ ଧର୍ମ-ସାଧନା ପାଇଁ, ସୃଷ୍ଟିତଂତ୍ରର ନିୟତ କ୍ରିୟାବିଧାନରେ ନିଜର କର୍ମ ପାଳନ କରେ।

ଏ ଧର୍ମନୀତିରେ ଚିତ୍ତ ଦୃଢ଼ ରଖି ସୃଷ୍ଟିର ବ୍ୟାଖ୍ୟା କରିବାରେ ଆର୍ଯ ସ୍ୱାଧୀନ। ଦର୍ଶନର ମତବାଦରେ ତାହାର ନିର୍ଦ୍ଦିଷ୍ଟ ଶୃଙ୍ଖଳା ବା ବଂଧା-ଗତ ନାଇ। ଏତିକି କେବଳ ଶୃଙ୍ଖଳା ଯେ, କୌଣସି ମତବାଦରେ ଯେପରି ଧର୍ମ ହାନି ନ ହୁଏ; ଶ୍ରୁତି ନିଦେଶର ଅନ୍ୟଥା ନ ହୁଏ; ଆପ୍ତବାକ୍ୟର ଅଯଥା ଅପଳାପ ନ ହୁଏ; ସ୍ଥୂଳତଃ ସନାତନ ନିତ୍ୟ ଧର୍ମର ଗ୍ଳାନି ବା ଅପଚାର ନ ହୁଏ। ମତବାଦ ଯାହା ହେଉ, ଧର୍ମ ନିତ୍ୟ। ସମସ୍ତ ମତବାଦ ମଧ୍ୟରେ ଯେପରି କି ଏହି ନିତ୍ୟ ଧର୍ମର ବ୍ୟଭିଚାର ବା ଅପବାଦ ନ ହୁଏ। ଏହି ନିତ୍ୟତ୍ୱର ବ୍ୟାଖ୍ୟାହିଁ ସମସ୍ତ ମତବାଦର ମେରୁଦଂଡ। ଧର୍ମର ଏହି ନିତ୍ୟତ୍ୱରେ ସ୍ଥିର ରହି, ଆର୍ଯ ନିଜର ଅଧିକାର ଅନୁସାରେ ଶ୍ରୁତିବାକ୍ୟରେ ଥିବା ବିଶ୍ୱତତ୍ତ୍ୱର ସମାଧାନ କରିଅଛି; ନିଜ ଜୀବନର ସନାତନ ଆଧ୍ୟାତ୍ମିକତା ବୁଝିବାକୁ ଚେଷ୍ଟା କରିଅଛି; ଜୀବନର ଅର୍ଥ ଫେଡ଼ି ଦେଖିବାକୁ ପ୍ରୟାସ କରିଅଛି।

ଏହିଠାରେ ଜଗତ୍‌ର ଅନ୍ୟାନ୍ୟ ଧର୍ମ ଓ ମତବାଦ ପ୍ରତି ଲକ୍ଷ୍ୟ କଲେ ଅପ୍ରାସଂଗିକ ହେବ ନାଇ। ସେ ସବୁ ଧର୍ମରେ ସନାତନ ବା ସ୍ୱାଭାବିକ ଆତ୍ମବିକାଶ ଓ ଧର୍ମଧାରଣା ନାଇ। ସମାଜର ବିଶୃଙ୍ଖଳା, ଲୋକଚରିତ୍ରରେ ସ୍ୱେଚ୍ଛାଚାରିତା, ତଥା ମାନବର ଧର୍ମନାଶବେଳେ ଜଣେ ଜଣେ ବ୍ୟକ୍ତି ନିଜର

ମତବାଦ ଓ ବ୍ୟକ୍ତିଗତ ବିଶ୍ୱାସକୁ ଲୋକରେ ପ୍ରଚାର କରିଅଛନ୍ତି। ଲୋକେ ସେହି ପ୍ରଚାରିତ ମତବାଦକୁ ନିଦେଶ ବୋଲି ମାନିଯାଇଛନ୍ତି। ସେ ସବୁ ମତବାଦର ଧର୍ମରେ ବିଶ୍ୱତନ୍ତ୍ରର ସନାତନ ଧାରଣା ଦୃଢ଼ ରହିବା ଆଶା କରାଯାଏ ନାଇ। ଯେଉଁଠାରେ ବ୍ୟକ୍ତିଗତ ସ୍ୱାତନ୍ତ୍ର୍ୟର ପ୍ରାଧାନ୍ୟ, ସେଠାରେ ସାନ୍ତ ଓ ପ୍ରମାଦମୟ ମାନବର ଅହଂକାର ଅଛି; ତେଣୁ ସଂଗେ ସଂଗେ ଧର୍ମ-ମତବାଦ ଯାହା ହେଉ, ଧର୍ମ ସଂଗେ ଅନେକ ଅସ୍ୱାଭାବିକ ଓ ଅନୁଦାର କ୍ରିୟାକଳାପ ପଶିଯିବା ସ୍ୱାଭାବିକ।

ପୃଥିବୀର ପ୍ରଚାରିତ-ମତବାଦ-ଧର୍ମମାନଂକରେ ଏହି ସବୁ ଲୀଳା ପଦେ ପଦେ ଦେଖିବାକୁ ମିଳେ। ଖ୍ରୀଷ୍ଟ ଓ ମୁସଲମାନ ଧର୍ମରେ ଈଶ୍ୱର-ଧାରଣା ଯେତେ ବ୍ୟାପକ, ବିଶ୍ୱତୋମୁଖୀ ହେଉ ନା କାହିଁକି, ବ୍ୟକ୍ତିଗତ ଅହଂକାରର ସତ୍ତା ଥିବାରୁ ସେସବୁ ଏକଦେଶଦର୍ଶୀ। ପ୍ରତିମା ପୂଜା କଲେ ସେ ସବୁ ଧର୍ମରେ ଦୁର୍ବିଷହ ଅପରାଧ ହୁଏ, ତାହା ଯେପରି କି ପାପ। ସେ ସବୁ ଧର୍ମରେ ଲୋକମାନେ ନିର୍ଦ୍ଦିଷ୍ଟ ସ୍ଥାନରେ, ନିର୍ଦ୍ଦିଷ୍ଟ କାଳରେ, ନିର୍ଦ୍ଦିଷ୍ଟ ନିୟମରେ ଉପାସନା କରିବାକୁ ବାଧ୍ୟ ହୋଇଅଛନ୍ତି। ଉପାସନାବେଳେ ହାତପାଦ ଧୋଇବା ଏବଂ ମକ୍କା ଆଡ଼କୁ ଚାହିଁବା ମଧ୍ୟ ମୁସଲମାନର ଗୋଟିଏ ଧର୍ମ-କାର୍ଯ୍ୟ। ଯିଶୁ ଖ୍ରୀଷ୍ଟ ଦରିଦ୍ରକୁ ରୁଟି ଖୁଆଇଥିଲେ ବୋଲି ସେହି ରୁଟି ଖାଇବାକୁ ଖ୍ରୀଷ୍ଟିଆନମାନେ ଧର୍ମ-କାର୍ଯ୍ୟ ବୋଲି ବିଚାରଂତି। ତେଣୁ ସେ ସବୁ ଧର୍ମରେ ଏହି ସବୁ ସାମାନ୍ୟ ସାମାନ୍ୟ କାର୍ଯ୍ୟପ୍ରତି ଯେତେ ଦୃଷ୍ଟି ଦିଆଯାଏ, ଈଶ୍ୱର ବା ବିଶ୍ୱ ବ୍ୟାଖ୍ୟାର ମତବାଦରେ ସେତେ ଦୃଷ୍ଟି ଦିଆ ହୁଏ ନାଇ।

ସେ ସବୁ ଧର୍ମରେ ମାନବର ସ୍ୱାଧୀନତା ପଦେ ପଦେ ଅବଚ୍ଛିନ୍ନ ହୁଏ; ଇତିହାସ ଏହାର ସାକ୍ଷ୍ୟ ଦାନ କରୁଅଛି। ବିଧର୍ମୀ ବୋଲି ସେ ସବୁ ଧର୍ମରେ ଧର୍ମ ନାମରେ ଯେତେ ଅପଚାର, ବ୍ୟଭିଚାର, ରକ୍ତପାତ ଓ ଦୌରାତ୍ମ୍ୟ ହୋଇଅଛି, ତାହା ଇତିହାସ-ପାଠକମାନେ ଜାଣଂତି। ସେପରି ହେବା ସ୍ୱାଭାବିକ। ପ୍ରମାଦମୟ ମାନବ ମହାମନୀଷୀ ଓ ମହାପୁରୁଷ ହୋଇପାରଂତି; କିଂତୁ ଧର୍ମଧାରଣା ଯଦି ତାଂକରି ନିଦେଶରେ ପରିବଦ୍ଧ ଓ ସୀମାଯୁକ୍ତ ହୁଏ, ପୁଣି ତାଂକ ମତଗ୍ରହଣ ବା ତଜ୍ଜ୍ଞାପକ ଅନୁଷ୍ଠାନ ମାତ୍ରକେ ଯେବେ ମନୁଷ୍ୟ ମହାମାନବୀୟତା ଓ ମୁକ୍ତିର ଅଧିକାରୀ ହୁଏ, ତେବେ ଶିଷ୍ୟମାନେ ଅସହିଷ୍ଣୁ ହେବାରେ ଅସଂଭବ କିଛି ନାଇ। ସେହି ଧର୍ମର ପ୍ରବର୍ତ୍ତକମାନେ ଯଦି ଈଶ୍ୱର ବୋଲି ବିବେଚିତ ହୁଅଂତି, ତେବେ ତାଂକର ଦୈହିକ କ୍ରିୟାକଳାପ ପର୍ଯ୍ୟଂତ ଈଶ୍ୱରଂକର କ୍ରିୟାକଳାପ ବୋଲି ସାଧାରଣ ଲୋକେ ବୁଝିନେବାରେ ଆପତ୍ତି କିଛି ନାଇ; ବସ୍ତୁତଃ ତାହାହିଁ ହୋଇଅଛି ଓ ଏହି ବ୍ୟକ୍ତି-ଭକ୍ତିରେ ମାନବ ଧର୍ମ ନାମରେ ଅସହିଷ୍ଣୁ ହୋଇ ଅପଚାର କରିଅଛି।

ବିଶ୍ୱତଂତ୍ରର ନିୟମ ମଧ୍ୟରେ ଆର୍ଯ୍ୟ ଯେ ବିଶାଳ ସ୍ୱାଧୀନତା ଅନୁଭବ କରିଅଛି, ବିଶ୍ୱବ୍ରହ୍ମାଂଡ ସଂଗେ ନିଜକୁ ଏକ ମନେକରି, ସ୍ଥିର କର୍ତବ୍ୟରେ ପ୍ରତିଷ୍ଠିତ ରହି ଆର୍ଯ୍ୟ ଯେ ଅନଂତ ବିଶ୍ୱଲୀଳା ମଧ୍ୟରେ ଉଦାର ଆତ୍ମବୋଧ ଅନୁଭବ କରିଅଛି, ସ୍ଥୂଳତଃ ବିଶ୍ୱୈକତାରେ ଆର୍ଯ୍ୟ ସଂତାନ ଯେ ଆତ୍ମଲାଭ କରିବାରେ ସମର୍ଥ ହୋଇଅଛି, ବ୍ୟକ୍ତିର ରାଜତ୍ୱରେ, ବ୍ୟକ୍ତିଦ୍ୱାରା ନିର୍ଦ୍ଦିଷ୍ଟ କର୍ତବ୍ୟ ମଧ୍ୟରେ କିଂବା ବ୍ୟକ୍ତିଠାରେ ଆରୋପିତ ଧର୍ମ-ନୀତିରେ ମନୁଷ୍ୟ ସେ ସ୍ୱାଧୀନତା, ସେ ଆତ୍ମବୋଧ, ସେ ଆତ୍ମଲାଭ ପାଇବ କାହୁଁ?

ଏହି ଆର୍ଯ୍ୟଭୂମିରେ ବୌଦ୍ଧଧର୍ମର କଥା ଦେଖାଯାଉ। ବୌଦ୍ଧଧର୍ମରେ ରକ୍ତପାତ ନାଇ; ଉଦାରତାର ଅଭାବ ନାଇ; ବିସ୍ତୀର୍ଣ ସାମ୍ୟ ଓ ସମପ୍ରାଣତା ବିଶ୍ୱବ୍ୟାପୀ କହିଲେ ଚଳେ; କିଂତୁ ସେଠାରେ ମଧ୍ୟ ବ୍ୟକ୍ତିର ଏହି ଆଧିପତ୍ୟ ଆର୍ଯ୍ୟ-ଧର୍ମୀର ମୁକ୍ତ ସ୍ୱାଧୀନତାରେ ବାଧା ଦେଇଅଛି। ବୁଦ୍ଧଦେବ ଏହି ଆର୍ଯ୍ୟଜାତିର ସଂତାନ। ଆର୍ଯ୍ୟ-ଧର୍ମରେ ପ୍ରାଣିତ, ଆର୍ଯ୍ୟ-ନିଷ୍ଠାରେ ପ୍ରତିପାଳିତ ଓ ଆର୍ଯ୍ୟ-ଆଦର୍ଶରେ ଗଠିତ ହୋଇଥିଲେ, କିଂତୁ ସମାଜର କେତେକ ଆପାତବିଶୃଙ୍ଖଳା ଦେଖି, ତାଂକର ଯଥାର୍ଥ ଅହଂକାରର ଉଦୟ ହେଲା। ସେ ବେଦର ସନାତନ ଧର୍ମରେ ବହୁ ପରିମାଣରେ ଅଧିଷ୍ଠିତ ଥିଲେହେଁ, ସ୍ଥୂଳରେ ବିଚ୍ଛିନ୍ନ ହେଲେ। ଧର୍ମର ସନାତନ ପରଂପରା ପ୍ରତି ଲକ୍ଷ୍ୟ ନ ରଖି ନିଜର ଜ୍ଞାନ ଜଗତ୍‌ରେ ପ୍ରଚାରକଲେ।

ବୁଦ୍ଧଦେବଂକ ଜୀବନରୁ ଜଣାଯାଏ, ଜରା, ଦାରିଦ୍ର୍ୟ ଓ ମୃତ୍ୟୁ ଦେଖି ତାହାଂକ ପ୍ରାଣରେ ଆଘାତ ଲାଗିଲା। ଏହିଠାରେ ତାଂକର ପ୍ରଥମ ଭ୍ରାଂତି। ଜରା, ଦାରିଦ୍ର୍ୟ, ମୃତ୍ୟୁ ପ୍ରତ୍ୟେକେ ଯେ ମଂଗଳମୟ, ମହା ବିଶ୍ୱତଂତ୍ରର ଗୋଟିଏ ଗୋଟିଏ ନିର୍ଦ୍ଦିଷ୍ଟ ବିଧି, ଏହା ସେ ବୁଝିଲେ ନାଇ। ମାନବକୁ ଦୁଃଖମୟ ବୋଲି ବିଚାରକଲେ। ଜରା, ଦାରିଦ୍ର୍ୟ, ମୃତ୍ୟୁରୁ ତାହାକୁ ଉଦ୍ଧାର କରିବାପାଇଁ ପ୍ରୟାସ କଲେ। କଲ୍ୟାଣମୟ ବିଧାତାଂକ କଲ୍ୟାଣ ଗ୍ରହଣ ନ କରି ତାହାର ପ୍ରତିବିଧାନ କରିବାକୁ ପ୍ରଯତ୍ନ କଲେ। ଏହିଠାରେ ଅହଂକାର ପରିସ୍ଫୁଟ। ଅବଶ୍ୟ ଆଦର୍ଶ ତ୍ୟାଗୀ, ମହାମହିମ, ଉଦାରପ୍ରାଣ ବୁଦ୍ଧଦେବ ପୃଥିବୀର ଧର୍ମପ୍ରଚାରକମାନଂକ ମଧ୍ୟରେ ଶ୍ରେଷ୍ଠ। ତାଂକ ପରି ନିରବଲଂବ, ସ୍ୱାର୍ଥହୀନ କର୍ମମାର୍ଗ ପୃଥିବୀରେ ଅନ୍ୟ କୌଣସି ଧର୍ମପ୍ରଚାରକ ଦେଖାଇଛଂତି କି ନା ସଂଦେହ। ଏଠାରେ ବୁଦ୍ଧଦେବ ବା ତାଂକର ସମଧର୍ମୀ କୌଣସି ଧର୍ମପ୍ରଚାରକଂକର ନିଂଦା କରାଯାଉ ନାଇ। ସେମାନେ ମାନବର କଲ୍ୟାଣ ପାଇଁ ଆତ୍ମୋତ୍ସର୍ଗ କରିଥିଲେ; ସମାଜର ଅପଚାର ଅନୁଭବ କରି ନିର୍ବାଣ ବା ମୁକ୍ତିର ବିଶ୍ୱନିଦେଶ ଲୋକଂକୁ ଜଣାଇଦେବା ପାଇଁ ଯତ୍ନ କରିଥିଲେ; କିଂତୁ ବ୍ୟକ୍ତିବିଶେଷର ପ୍ରଚାରିତ ଧର୍ମରେ ଆର୍ଯ୍ୟ-ଧର୍ମର ସାର୍ବଜନୀନତା ରହିବା ସଂଭବ ବା ସ୍ୱାଭାବିକ ନୁହେ, ଏହାହିଁ କହିବାର ତାତ୍ପର୍ଯ୍ୟ।

ରକ୍ତ-ମାଂସ-ଶିରା-ସ୍ନାୟୁ-ଅସ୍ଥି-ବସାମୟ ଶରୀରରେ ଯେତେ ଦିନ ମାନବ ଆବଦ୍ଧ ଅଛି, ସେତେ ଦିନ ତାହାର ବ୍ୟକ୍ତିତ୍ୱଭାବ ଦୃଢ଼। ସେ ମହାପ୍ରାଣତାବଳରେ ଜୀବନକୁ ସାର୍ବଜନୀନ ଶକ୍ତିର ଅଂଗୀଭୂତ ବୋଲି ଅନୁଭବ କରିପାରେ; କିଂତୁ ଶାରୀରିକ କ୍ରିୟା କଳାପରେ ସୀମାବଦ୍ଧ ରହି, ସର୍ବଦା ବ୍ୟକ୍ତିତ୍ୱଭାବ ପ୍ରତି ଆକୃଷ୍ଟ ହେବ। ସେଥିପାଇଁ ଦର୍ଶନରେ କୁହାଯାଇଅଛି, ପ୍ରକୃତିରେ ଅହଂକାର ପ୍ରକାଶ ପାଇଲେ, ପ୍ରକୃତି ଗୁଣମୟ ହୋଇ ଏହି ନାମରୂପମୟ ଚିତ୍ରଜଗତ୍ ସୃଷ୍ଟି କରେ। ସୃଷ୍ଟି ସଂଗେ ଅହଂକାରର ନିତ୍ୟ ସଂବଂଧ। ମୁକ୍ତିରେ ସେ ଅହଂକାର ନାଶ ହୁଏ। ସାର୍ବଜନୀନତା ଅନୁଭବ କରି ମାନବ ମୁକ୍ତି ଆଡ଼କୁ ଯାଇପାରେ; କିଂତୁ ତାକୁ ଜୀବନ୍ମୁକ୍ତ କୁହାଯାଏ; ଅର୍ଥାତ୍ ଦେହରେ ଥାଇ, ବ୍ୟକ୍ତିତ୍ୱ ବହନ କରି ସେ ମୁକ୍ତି ଅନୁଭବ କରେ ମାତ୍ର। ସେଥିପାଇଁ ବ୍ୟକ୍ତି ଯେତେ ଜୀବନ୍ମୁକ୍ତ ହେଉ ନା କାହିଁକି, ତାହାଠାରେ ଶାରୀରିକ ବ୍ୟକ୍ତିତ୍ୱ ଫଳରେ ଅହଂକାରର ଛାୟା ନିଶ୍ଚୟ ରହିବ।

ସେଥିପାଇଁ ବୁଦ୍ଧଦେବ ମୃତ୍ୟୁକଥା ଭାବିବାକୁ ଯାଇ, ମୃତ୍ୟୁରେ ବୋଧ ହୁଏ ଅମୃତ ଦେଖି ପାରି ନାହାଂତି। ମୃତ୍ୟୁ ପରେ ଜନ୍ମ ତାଂକର ଅସହ୍ୟ ହୋଇଅଛି। ସେଥିପାଇଁ ସେ ନିର୍ବାଣର ବ୍ୟବସ୍ଥା କରିଅଛଂତି। ଆତ୍ମା ଯେ ମୃତ୍ୟୁ ମଧ୍ୟରେ ଅମୃତରେ ପ୍ରବେଶ କରେ, ତାହା ସେ କହିନାହାଂତି। ମୃତ୍ୟୁର ବିଭୀଷିକାରେ ମାନବକୁ ତ୍ରସ୍ତ ଦେଖି ସେ ଯେପରି କି କହିଅଛଂତି– 'ମାନବ ମୃତ୍ୟୁହିଁ ଶେଷ; ମୃତ୍ୟୁପରେ ଜନ୍ମ ହୁଏ ସତ; କିଂତୁ କର୍ମବଳରେ ସେ ଜନ୍ମ ନିରୋଧ କରିପାରିଲେ, ମୃତ୍ୟୁରେ ମାନବର ଶେଷ ହୁଏ। ଜରା, ଦାରିଦ୍ର୍ୟ, ଦୁଃଖ, ମୃତ୍ୟୁ ପ୍ରଭୃତିରୁ ମୁକ୍ତି ଲଭିବାପାଇଁ ତୁଂଭେ ଏହି ନିର୍ବାଣ ଏହି ଶେଷ ମୃତ୍ୟୁ, ଏହି ଚରମ ବିନାଶ ନିମଂତେ କର୍ମସାଧନାକର।

ବୁଦ୍ଧଦେବଂକ ପ୍ରଚାରିତ ଧର୍ମର ଏହି କର୍ମବିଭାବ ଆର୍ଯ୍ୟ-ଧର୍ମର ପରଂପରାରୁ ଗୃହୀତ; ମାତ୍ର ଦୁଃଖନାଶରେ ନିର୍ବାଣ ଆର୍ଯ୍ୟ-ଧର୍ମରୁ ବିଚ୍ଛିନ୍ନ। ମୋଟ କଥା, ଏହି ଦୁଃଖନାଶରେ ନିର୍ବାଣକାମନା ବୌଦ୍ଧ ମତକୁ ଗୋଟିଏ ବ୍ୟକ୍ତିଗତ ଧର୍ମବାଦରେ ପରିଣତ କରିଅଛି। ପାରଂପରିକ କର୍ମବାଦ ଘେନି ବୌଦ୍ଧଧର୍ମରେ ଯଥେଷ୍ଟ ସାର୍ବଜନୀନତା ପ୍ରକାଶ ପାଇଅଛି। ବିଶାଳ ଉଦାରତାରେ ବୌଦ୍ଧ ବିଶ୍ୱଜଗତ୍ ଆଲିଂଗନ କରିଅଛି। ଜଡ଼, ଚେତନ, ଉଦ୍ଭିଦ, ସ୍ୱେଦଜଠାରୁ ଦେବ, ଦାନବ, ମାନବ ପର୍ଯ୍ୟଂତ ସର୍ବତ୍ର ବୌଦ୍ଧର ପ୍ରଚୁର ପ୍ରାଣ ପରିବ୍ୟାପ୍ତ ହୋଇଅଛି ସତ୍ୟ; କିନ୍ତୁ ବ୍ୟକ୍ତିର ଦୁଃଖନାଶ ଓ ନିର୍ବାଣପ୍ରାପ୍ତି ଏ ସମସ୍ତ ବିଶ୍ୱଜନୀନ ଉଦାରତାର କେଂଦ୍ର। ଏଥିରେ ଆର୍ଯ୍ୟର ବିଶ୍ୱତଂତ୍ରୀକ ବୁଦ୍ଧି ନାଇ। ବିଶ୍ୱନିୟମରେ ମାନବର ଆତ୍ମଲାଭ ପରିବର୍ତ୍ତରେ ବୌଦ୍ଧ ବିଶ୍ୱରୁ ବିଚ୍ଛିନ୍ନ ହୋଇ, ଆତ୍ମନାଶ କରି ଦୁଃଖରୁ ମୁକ୍ତି ପାଇବାକୁ ଯେପରି କି କାମନା କରିଅଛି।

ବ୍ୟକ୍ତି-ପ୍ରଚାରିତ ଧର୍ମ ଯେତେ ଉନ୍ନତ ଉଦାର ହେଲେହେଁ, ତହିଁରେ ଆର୍ଯ୍ୟର ବିଶ୍ୱତଂତ୍ରିକ ଧର୍ମଧାରଣା, ଆର୍ଯ୍ୟନୀତିର ବିଶାଳ ଉଦାରତା ଓ ବିଶ୍ୱୈକ ବୁଦ୍ଧି ଫୁଟିବା ସ୍ୱାଭାବିକ ନୁହେ। ବ୍ୟକ୍ତି-ପ୍ରଚାରିତ ଧର୍ମ ସାର୍ବଜନୀନ ସ୍ୱତଃବିକଶିତ ମାନବଧର୍ମ ବା ଆର୍ଯ୍ୟଧର୍ମର ଗୋଟିଏ ଗୋଟିଏ ବିଭାବ ପ୍ରକାଶ କରିପାରେ। ସେଥିପାଇଁ ବ୍ୟକ୍ତି-ପ୍ରଚାରିତ ଧର୍ମର ନିର୍ଦ୍ଦିଷ୍ଟ କ୍ରିୟାରାଶିର ସାର୍ବଜନୀନ ଉଦାରତା ଓ ଆତ୍ମବୁଦ୍ଧି ରହିବା ତାଦୃଶ ସଂଭବ ନୁହେ। ଆର୍ଯ୍ୟଧର୍ମ ସୁବିଶାଳ, ଅନଂତ; ଖ୍ରୀଷ୍ଟ, ମୁସଲମାନ, ବୌଦ୍ଧଧର୍ମ ସମସ୍ତେ ତାହାର ଏକ ଏକ ଅଂଗ ମାତ୍ର। ମୁସଲମାନର ଏକେଶ୍ୱରବାଦ, ଖ୍ରୀଷ୍ଟିଆନର ଦ୍ୱୈତ ବୁଦ୍ଧିରେ ଭକ୍ତି ଓ ନିର୍ବାଣପ୍ରେପ୍ସୁ ବୌଦ୍ଧର କର୍ମସାଧନା କେହି ଆର୍ଯ୍ୟଧର୍ମର ହେୟ ନୁହଂତି। ଆର୍ଯ୍ୟ କାହିଁରେ ଅସହିଷ୍ଣୁ ନୁହେ। କୌଣସି ନିର୍ଦ୍ଦିଷ୍ଟ କ୍ରିୟା-ବିଧାନ ଆର୍ଯ୍ୟ-ଧର୍ମମତରେ ଘୃଣ୍ୟ ନୁହେ।

ଆର୍ଯ୍ୟର ଜଗତ୍ ଈଶ୍ୱରମୟ। ବିଧାତୃନିଦେଶରେ ମାନବ ଯେପରି କି ସର୍ବଦା କର୍ମ କରୁଅଛି। ସେହି ଅକାଟ୍ୟ ନିଦେଶହିଁ ତାହାର ଧର୍ମ। ଏ ଭକ୍ତର ବାଣୀ। ଭକ୍ତ ଈଶ୍ୱରଂକ ଆଦେଶରେ ନିଜର ମଂଗଳ ଦେଖେ। ତାହାର ଅହଂକାର ନାଇ। ସେ ଈଶ୍ୱରଂକର ସଂପୂର୍ଣ୍ଣ ଦାସ୍ୟ ଅବଲଂବନ କରିପାରିଲେ କୃତାର୍ଥ। ସେ ଈଶ୍ୱରରୁ ଭିନ୍ନ; କିଂତୁ କୌଣସି କ୍ରିୟାରେ ସେ ଆପଣାର ଭିନ୍ନ ସତ୍ତା ବା ସ୍ୱାତଂତ୍ର୍ୟ ରଖିବାକୁ ଇଚ୍ଛା କରେ ନାଇ। ଆର୍ଯ୍ୟ-ଧର୍ମର ଏ ଗୋଟିଏ ବିଭାବ। ଏ ବୈଷ୍ଣବ-ଭାବ। ଏହି ଦାସ୍ୟଭାବରେ ବୈଷ୍ଣବ ନିଜର ନିତ୍ୟ ନିର୍ଦ୍ଦିଷ୍ଟ ଧର୍ମ ପାଳନ କରେ। ନିଜର କର୍ତ୍ତବ୍ୟରେ ନିଜର କୌଣସି ଆସକ୍ତି ବା କର୍ତ୍ତୃତ୍ୱ-ବୁଦ୍ଧି ନ ରଖି ସବୁ ଈଶ୍ୱରଠାରେ ଅର୍ପଣ କରି ସେ କୃତାର୍ଥ ହୁଏ। ତାହାର ଅସ୍ତିତ୍ୱ ଈଶ୍ୱର-ଅସ୍ତିତ୍ୱଠାରୁ ଭିନ୍ନ ହୋଇପାରେ; କିଂତୁ ପାର୍ଥକ୍ୟ ନାଇ। ସେ ଉପାସନା କରେ; କିଂତୁ ସେ ଉପାସନାରେ ଅହଂକାର ନାଇ। ତାହାର ଆତ୍ମାରେ ବିଶ୍ୱମୟ ଈଶ୍ୱରଂକର ଅଧିଷ୍ଠାନ। ତାହାର ନିଜର ଜୀବାତ୍ମାର ସିଂହାସନରେ ପରମାତ୍ମା ବିଧାତାଂକର ପ୍ରତିଷ୍ଠା; ଫଳରେ ଦୁହେଁ ଏକ ଧର୍ମୀ, ଏକ ସ୍ୱରୂପ। ଜୀବାତ୍ମା ପରମାତ୍ମାର କୌଣସି ଭେଦ ତାହାର ଉଦ୍ଦେଶ୍ୟ ନୁହେ, ସମନ୍ୱୟହିଁ ତାର ଆକାଂକ୍ଷା।

ବିଶିଷ୍ଟ ଦ୍ୱୈତବାଦ ଆର୍ଯ୍ୟ-ଧର୍ମ ବ୍ୟାଖ୍ୟାରେ ଆଉ ଗୋଟିଏ ବିଭାବ। ବିଶିଷ୍ଟାଦ୍ୱୈତବାଦୀମାନେ ଏହି ସମନ୍ୱୟ ଆକାଂକ୍ଷା କରନ୍ତି ସତ; କିଂତୁ ତାଂକ ମତରେ ଈଶ୍ୱରଂକ ଧର୍ମ ଈଶ୍ୱର କରୁଅଛଂତି। ଈଶ୍ୱର ବା ବ୍ରହ୍ମ ଏହି ନାମରୂପମୟ ଅନଂତ ସୃଷ୍ଟି ମଧ୍ୟରେ ଆତ୍ମବିକାଶ ଓ ଆତ୍ମଲାଭ କରଂତି। ଜୀବାତ୍ମା ମଧ୍ୟ ଏହି ନାମରୂପମୟ ସୃଷ୍ଟିରୁ ପୃଥକ୍ ନୁହେ; ଅତଏବ ସେ ବ୍ରହ୍ମ ପଦାର୍ଥରୁ ଭିନ୍ନ ନୁହେ। ଏହି ଜୀବାତ୍ମା ନିଜର ନିତ୍ୟ ନିର୍ଦ୍ଦିଷ୍ଟ ଧର୍ମସାଧନାରେ ସେହି ପରମାତ୍ମାର ଭଗବତ୍ ଆତ୍ମଲାଭରେ ସାହାଯ୍ୟ କରେ ମାତ୍ର। ଜୀବାତ୍ମା ସେହି

ବ୍ରହ୍ମ ବିକାଶର ଅଂଶ। ତାହାର ସ୍ୱଧର୍ମ-ସାଧନାରେ ସେ ମୁକ୍ତ, ପରମାତ୍ମାର ଆତ୍ମଲାଭ ପୂର୍ଣ କରୁଅଛି। ତାହାର ଅସ୍ତିତ୍ୱ ସ୍ୱତନ୍ତ୍ର ହେଲେ ମଧ୍ୟ ତହିଁରେ ପ୍ରକୃତିଗତ ସ୍ୱାତଂତ୍ର୍ୟ ବା ପ୍ରଭେଦ ନାଇ। ଜୀବାତ୍ମା ପରମାତ୍ମା ଏକ ବସ୍ତୁ। ବିଶିଷ୍ଟାଦ୍ୱୈତବାଦୀ ସ୍ପଷ୍ଟ କହେ, ଏ ଜୀବାତ୍ମା କର୍ମବଳରେ ମୁକ୍ତ ହେଲେ ତାର ପରମାତ୍ମା ସଂଗେ ଯେ ସମନ୍ୱୟ ହୁଏ, ସେଥିରେ ଆଉ କିଛି ପ୍ରଭେଦ ରହେ ନାଇ। ଜୀବାତ୍ମା ଓ ପରମାତ୍ମା ଏକ ହୁଅଂତି; ଦୁହିଂକର ପୂର୍ଣ ଏକତ୍ୱ ସାଧିତ ହୁଏ।

ଅଦ୍ୱୈତବାଦୀର ଆଉ ଅବଲଂବନ ନାଇ। ତାହାର ମତରେ ଅବିଦ୍ୟା, ମାୟା ବା ଅଜ୍ଞାନର ସଂପର୍କରେ ବ୍ରହ୍ମର ଆତ୍ମପ୍ରକାଶହିଁ ସୃଷ୍ଟି। କର୍ମବଳରେ ମାୟାର ମଳିନତା ଅପସାରିତ ହେଲେ, ଅଜ୍ଞାନ ଦୂର ହେଲେ, ମୋକ୍ଷ ହୁଏ। ସେଥିରେ ଜୀବାତ୍ମା ପରମାତ୍ମାର ସମନ୍ୱୟ ବା ଏକତ୍ୱ ସଂଭବ ନୁହେ; କାରଣ କୌଣସି ପ୍ରକାର ଭେଦ ନାଇ। ବ୍ରହ୍ମ ପଦାର୍ଥର ସ୍ଥାନରେ ବିଭାଗ ବା କାଳରେ ପୂର୍ବାପର ନାଇ। ଭେଦ ସଂଭବ କିପରି? ଅନଂତ ବିଶ୍ୱର ପ୍ରତ୍ୟେକ ବସ୍ତୁ ନିଜ ନିଜ ଧର୍ମରେ ଆତ୍ମଲାଭ କରଂତି; ମନୁଷ୍ୟ ବି କରେ। ସମସ୍ତଂକର ମୋକ୍ଷରେ ପୂର୍ଣବ୍ରହ୍ମର ବିକାଶ। ସମସ୍ତ ସୃଷ୍ଟିରେ ଯେପରି, ପ୍ରତ୍ୟେକ ମାନବଠାରେ ସେହିପରି ବ୍ରହ୍ମ ଆତ୍ମଲାଭ କରୁଅଛଂତି। ମନୁଷ୍ୟର କର୍ମ ବା ଧର୍ମ ଅନ୍ୟ କୌଣସି ଈଶ୍ୱରର ଆଦେଶ ନୁହେ; ଏହା ନିଜର ଧର୍ମ। ଏଥିରେ ନିଜର ମୋକ୍ଷ ସାଧିତ ହୁଏ। କେବଳ ଧର୍ମ ବା ଜ୍ଞାନ ବଳରେ ଅବିଦ୍ୟା ଅପସାରିତ ହେଲେ ନିଜର କର୍ତବ୍ୟ, ନିଜର ମୋକ୍ଷ, ଏ ଭାବ ରହେ ନାଇ। ବ୍ୟକ୍ତିର ଅଜ୍ଞାନଜନିତ ଅହଂକାର ବିଶ୍ୱମୟ ଆତ୍ମାର ପୂର୍ଣଭାବରେ ଉଭାସିତ ହୁଏ; ଭେଦବୁଦ୍ଧି ତିରୋହିତ ହୁଏ।

ଏହି ମତବାଦମାନଂକ ମଧ୍ୟରେ ଉତ୍କର୍ଷ ଅପକର୍ଷ ବିଚାର କରିବା ଏ ପ୍ରବଂଧର ଉଦ୍ଦେଶ୍ୟ ନୁହେ। ଏପରି ସ୍ଥୂଳ ନିର୍ଦ୍ଦେଶରେ ତାହା ହୋଇ ନ ପାରେ। ତେବେ ଏତିକି ବୁଝାଯାଉଅଛି ଯେ, ଜୀବାତ୍ମା ସଂଗେ ସମନ୍ୱୟ ହେଉ, ଏକତ୍ୱ ହେଉ ବା ଅଭେଦ ହେଉ, ଈଶ୍ୱର ପଦାର୍ଥର କୌଣସି ଧାରଣାରେ ସନାତନ ଧର୍ମର କ୍ଷତିବୃଦ୍ଧି ନାଇ; ଆଧ୍ୟାତ୍ମିକତା ଖଂଡିତ ହେଉ ନାଇ। ଜୀବ ଈଶ୍ୱରଠାରେ ଅପର ବୁଦ୍ଧି ରଖି ନାଇ। ବ୍ୟକ୍ତି ବାଧ୍ୟ ହୋଇ ଅନ୍ୟର ଆଦେଶ ପାଳନ କରୁ ନାଇ।

ଅନ୍ୟର ଆଦେଶ ବାଧ୍ୟ ହୋଇ ପାଳନ କରିବାର ଭାବ ଆସିଲେ, ବ୍ୟକ୍ତିର ଆତ୍ମା ଶୃଙ୍ଖଳାରେ ଆବଦ୍ଧ ହୋଇ ସଂକୁଚିତ ହୋଇପାରେ। ମୋତେ ଯେ କର୍ତବ୍ୟ ଦିଆଗଲା, ସେଥିରେ ମୋର କିଛି ସାକ୍ଷାତ୍ ସଂବଂଧ ନ ଥିଲେ, ମୋ ପ୍ରତି ତାର କିଛି ଉପଯୋଗିତା ନ ଥିଲେ, ସେ ମୋପ୍ରତି ନୀରସ ଓ ଶୁଷ୍କ। ଅର୍ଥ ନ ବୁଝି କାର୍ଯ କଲେ କାର୍ଯର ପ୍ରୟୋଜନରେ ଆସକ୍ତି ନ ଥାଉ

ପଛକେ, କର୍ମ ସଂଗେ କୌଣସି ସ୍ୱାଭାବିକ ସହାନୁଭୂତି ହୁଏ ନାଇ ଏବଂ କାର୍ଯରେ ସହାନୁଭୂତି ନ ଥିଲେ, ମନୁଷ୍ୟ ଗୋଟିଏ ଜଡ଼ ପିଂଡ, ଗୋଟିଏ କଳ। ଆର୍ଯ ଏପରି ଜଡ଼ ପିଂଡ ବା କଳପରି କଦାପି ଶୁଷ୍କ କର୍ତବ୍ୟରେ ଜୀବନ କଟାଇ ନାଇ। ଧର୍ମ-ଧାରଣା କୌଣସି କଠୋର ଶୁଷ୍କ ଆଦର୍ଶ ଅନୁସରଣ କରିବାରେ ପର୍ଯବସିତ ନୁହେ। ଏହିପରି କଠୋର ଶୁଷ୍କ ଆଦର୍ଶାନୁସାରୀ ଦଳେ ଦାର୍ଶନିକ ଅଛଂତି। ସେମାନଂକୁ ଇଂରେଜୀରେ ରାସନାଲିଷ୍ଟସ୍ (Rationalists) କହଂତି। ସେମାନଂକ ମତରେ ଶୁଷ୍କ ହେଉ ବା ସରସ ହେଉ, ଆଦର୍ଶର ଅନୁସରଣ କରିବାକୁ ହେବ। ଆର୍ଯର ଧର୍ମସାଧନା ଏମାନଂକ ଆଦର୍ଶ ଅନୁବର୍ତନ ପରି ତିକ୍ତ ଔଷଧ-ସେବନ ନୁହେ। ତାହାର କର୍ମପ୍ରେରଣା ଆଦର୍ଶର କଶାଘାତ ନୁହେ।

ଆର୍ଯ-ଧର୍ମ ଆତ୍ମଲାଭର ସରସତାରେ ପୂର୍ଣ। କାହାର ଈଶ୍ୱର ସଂଗେ ସମନ୍ୱୟରେ ଆତ୍ମଲାଭ, କାହାର ଏକତ୍ୱରେ ଆତ୍ମଲାଭ, କାହାର ବା ଅବିଦ୍ୟାର ଆବରଣ ଅପସାରିତ ହେଲେ ଆତ୍ମଲାଭ। ସବୁ ପ୍ରକାରରେ ଆର୍ଯ ଜଗତ୍‌କୁ ଈଶ୍ୱରମୟ ମନେକରି ଧର୍ମରେ ସେହି ଈଶ୍ୱରଂକଠାରେ ଆତ୍ମସମର୍ପଣ କରିଥିଲା। ଲୋକ-ବ୍ୟବହାରରେ ଭକ୍ତି-ପଂଥାର ସ୍ୱଭାବ ସରଳ ଆତ୍ମଦୈନ୍ୟର ଅନୁକରଣରେ 'ଈଶ୍ୱରଂକ ନିଦେଶ, ବିଭୁଂକ ଆଦେଶ' ପ୍ରଭୃତି ପ୍ରଚଳିତ ଅଛି ସତ; କିଂତୁ ଏ ସମସ୍ତ ମଧ୍ୟରେ ଆର୍ଯପ୍ରାଣର ପରମାଦର୍ଶ ସେହି ଆତ୍ମଲାଭ। ଫଳରେ ଯେଉଁ ଐଶୀ ସତ୍ତା ସମସ୍ତ ଚରାଚର ଜଗତ୍‌କୁ ବ୍ୟାପ୍ତ କରିଅଛି, ଯାହାର ଚିର ଜୀବଂତ ଜ୍ୟୋତିରେ ବିଶ୍ୱବ୍ରହ୍ମାଂଡ ଦେଦୀପ୍ୟମାନ, ସେହି ସତ୍ତା ମୋ ଭିତରେ ପୂର୍ଣ ବିରାଜିତ ବା ମୁଁ ସେହି ସତ୍ତା ସଂଗେ ଏକ ବା ମିଳିତ ହେବି। ସେହି ସତ୍ତାରେ ମୁଁ ମୋର ଆତ୍ମା ଅର୍ପଣ କରିଅଛି। ମୋ ଆତ୍ମାରେ ତାଂକରି ଅଧିଷ୍ଠାନ ବିନା ଆଉ କିଛି ନାଇ। ସେଥିପାଇଁ ଭକ୍ତକବି ଗାଇଅଛଂତି—

"ଦୂର ଦେବାଳୟେ ଯିବା ନାହିଁ ପ୍ରୟୋଜନ
ନିଜ ଅଭ୍ୟଂତରେ ଦେଖ ଫେଡ଼ିଣ ନୟନ,
ହୃଦ-କପିଳାଶେ ତୋର ବହେ ପ୍ରେମ-ଝର
ବିଜେ କରିଛଂତି ତହିଁ ସ୍ୱୟଂଭୂ ଶଂକର।"

ବିଶ୍ୱସତ୍ତାର ସେହି ସ୍ୱୟଂଭୂ ଶଂକର ମୋର ଆତ୍ମପୁରୁଷ; କିଂବା ମୋର ଆତ୍ମାରେ ତାଂକର ଅଧିଷ୍ଠାନ। ସେହି ଆତ୍ମପୁରୁଷହିଁ ସୃଷ୍ଟିର ମୂଳାଧାର। ତାଂକରି ନିୟମରେ, ତାଂକରି ନିଦେଶରେ ସୃଷ୍ଟ ବସ୍ତୁର ଧର୍ମ ନିର୍ଦିଷ୍ଟ। ସଂସାରର ବଂଧନରେ, ଅବିଦ୍ୟାର ଆବରଣ ମଧ୍ୟରେ ସେ ଆତ୍ମାକୁ ବିମଳ ଭାବରେ ମୁଁ ଅନୁଭବ କରିପାରେ ବା ନ ପାରେ, ସେହି ଆତ୍ମପୁରୁଷ, ସେହି ବ୍ରହ୍ମଜ୍ୟୋତି ସୃଷ୍ଟିର ବିଚିତ୍ରତା ସଂପାଦନ ପାଇଁ, ନିଜ ଧର୍ମ ନିଜେ ଗ୍ରହଣ କରିବା ପାଇଁ ମୋ ଭିତରେ ବିରାଜିତ ରହିଅଛଂତି। ସମସ୍ତ ସୃଷ୍ଟି-ସତ୍ତା ଖୋଜିଲେ, ମୁଁ ଯେଉଁ

ଆତ୍ମପୁରୁଷର ପରିଚୟ ପାଇବି, ଅନନ୍ତ ବିଶ୍ୱ ଯାହାଦ୍ୱାର ଜୀବନ୍ତ, ମୋ ଭିତରେ ସେହି ଆତ୍ମା 'ପଙ୍କମୟ ସର ମଧ୍ୟରେ କମଳ' ପରି ବିରାଜିତ ରହିଛନ୍ତି। ଭିତରକୁ ଚାହିଁ ଦେଖିପାରିଲେ, ତାଙ୍କୁହିଁ ଦେଖିବି। ଆର୍ଯ୍ୟର ଅପୌରୁଷେୟ ବେଦ ଏହାହିଁ ପ୍ରମାଣ କରୁଅଛନ୍ତି। ଆପ୍ତବାକ୍ୟ ଏହାହିଁ ସ୍ୱୀକାର କରୁଅଛନ୍ତି।

ଏହିପରି ନିର୍ମଳ ଅଧ୍ୟାତ୍ମଭାବରେ ଆର୍ଯ୍ୟ ଋଷି ବିଧାତାଙ୍କ ନିଦେଶକୁ ନିଜର କର୍ତ୍ତବ୍ୟ, ନିଜର ଧର୍ମ ବୋଲି ଗ୍ରହଣ କରିଅଛନ୍ତି। ଧର୍ମରେ ଏହିପରି ନିଜତ୍ୱ ଆସିବାରୁ ଆଦେଶରେ ଶୁଷ୍କ କଠୋରତା ନାହିଁ। ଆତ୍ମା ଯେପରି କି ଧର୍ମର ସଂଯମଦ୍ୱାରା ନିଜର କର୍ମ ନିଜେ ସାଧନା କରୁଅଛି। ବାଧ-ବାଧକତାର ଅରୁଚି ନାହିଁ; ଅଥଚ କର୍ତ୍ତବ୍ୟ ଦୃଢ଼ ଓ ସ୍ଥିର ରହିଅଛି। ଆର୍ଯ୍ୟ ସ୍ୱାଧୀନ ଆଚରଣ କରି ବିଧାତାଙ୍କ ନିଦେଶ ପୂର୍ଣ କରୁଅଛନ୍ତି; ଅନ୍ୟ ଭାଷାରେ କହିବାକୁ ଗଲେ ଆତ୍ମଲାଭ କରୁଅଛନ୍ତି। ସୃଷ୍ଟିରେ ଆତ୍ମା ବ୍ୟାପ୍ତ କରି, ଈଶ୍ୱର ସର୍ବଭୂତର 'ହୃଦ୍‌ଦେଶ'ରେ ଅବସ୍ଥିତ ଅଛନ୍ତି। ଯାବତୀୟ ସୃଷ୍ଟ ବସ୍ତୁ ନିଜ ନିଜ କର୍ତ୍ତବ୍ୟ ବା ଧର୍ମରେ ରହି, ଈଶ୍ୱରଙ୍କର ଏହି ସୃଷ୍ଟିରୂପ ଆତ୍ମବିକାଶ ସଂପନ୍ନ କରୁଅଛନ୍ତି, ସୃଷ୍ଟିର କ୍ରିୟା ଚଳାଉଅଛନ୍ତି। ଏହିପରି ଅନନ୍ତ ସୃଷ୍ଟିରେ ପରମାତ୍ମା ପ୍ରକାଶିତ ହୋଇ ଆତ୍ମଲାଭ କରୁଅଛନ୍ତି; ଆର୍ଯ୍ୟର ବିଶ୍ୱାସ, ସେ ସେହି ନିଜ ଧର୍ମରେ ଆତ୍ମଲାଭ କରିବ; ତେଣୁ ଆର୍ଯ୍ୟର ଧର୍ମ ଏକ ଦିଗରେ ଯେପରି ଈଶ୍ୱରଙ୍କର ନିଦେଶ, ଅନ୍ୟ ଦିଗରେ ସେହିପରି ଆତ୍ମଧର୍ମ ବା ସ୍ୱଧର୍ମ। 'ସ୍ୱଧର୍ମ' କହିଲେ ବିଶ୍ୱତନ୍ତ୍ରରେ ନିଜର ନିର୍ଦ୍ଦିଷ୍ଟ ଧର୍ମ ବା କର୍ତ୍ତବ୍ୟ ଓ ବିଶ୍ୱାତ୍ମାର ତଥା ଜୀବାତ୍ମାର ଆତ୍ମଲାଭ ନିମନ୍ତେ ଧର୍ମ ବା କର୍ତ୍ତବ୍ୟ, ଏହିପରି ସ୍ୱଧର୍ମର ଦ୍ୱିବିଧ ଅର୍ଥ ଏକ ଓ ଅଭିନ୍ନ। ଆର୍ଯ୍ୟର ମହା କର୍ତ୍ତବ୍ୟ ତାହାର ଧର୍ମ ଓ ସଂଯମ ଆତ୍ମଲାଭର ପନ୍ଥା। ଆର୍ଯ୍ୟଋଷି ସ୍ପଷ୍ଟ ଗାଇଚନ୍ତି—

"ଆତ୍ମାନଂ ରଥିନଂ ବିଦ୍ଧି, ଶରୀରଂ ରଥ ମେବତୁ।
ବୁଦ୍ଧିଂତୁ ସାରଥିଂ ବିଦ୍ଧି ମନଃ ପ୍ରଗ୍ରହ ମେବଚ।
ଇନ୍ଦ୍ରିୟାଣି ହୟାନାହୁ ର୍ବିଷୟାଂସ୍ତେଷୁ ଗୋଚରାନ୍।
ଆତ୍ମେନ୍ଦ୍ରିୟମନୋଯୁକ୍ତଂ ଭୋକ୍ତେ ତ୍ୟାହୁ ର୍ମନୀଷିଣଃ।"

ଅର୍ଥାତ୍— ରଥୀ ଯେପରି ସାରଥି, ଅଶ୍ୱ ପ୍ରଭୃତି ଦ୍ୱାରା ପ୍ରକୃତ ପନ୍ଥାରେ ଗନ୍ତବ୍ୟ ସ୍ଥାନକୁ ଯାଏ, ସେହିପରି ଧର୍ମାଚରଣରେ ଆତ୍ମାକୁ ରଥୀ ବୋଲି ଜାଣ; ଶରୀରଟି ରଥ ପରି, ବୁଦ୍ଧି ତହିଁରେ ସାରଥି; ଚକ୍ଷୁ-କର୍ଣାଦି ଇନ୍ଦ୍ରିୟମାନେ ଅଶ୍ୱ; ମନ ଇନ୍ଦ୍ରିୟଗ୍ରାହ୍ୟ ବା ଭୋଗ୍ୟ ବସ୍ତୁ (ବିଷୟମାନେ) ମାର୍ଗ; ଏହିପରି ଶରୀର ଇନ୍ଦ୍ରିୟ ମନୋଯୁକ୍ତ ଯେ ଆତ୍ମା ସେ ଭୋକ୍ତା; ଅର୍ଥାତ୍ ସୁଖ-ଦୁଃଖାଦି ଫଳର ଅଧିକାରୀ। ଏ ସବୁକୁ ସଂଯତ କରି ମୋକ୍ଷ ବା ଆତ୍ମଲାଭ କରିବାକୁ ହେବ, ଏ କଥା ଜ୍ଞାନୀମାନେ କହନ୍ତି।

ଏହିପରି ଆତ୍ମସଂଯମରେ ଧର୍ମ କଲେ, କର୍ତ୍ତବ୍ୟ-ନିରତ ହେଲେ, ଆତ୍ମଜ୍ଞାନ ହୁଏ। ଅତଏବ ଆର୍ଯ୍ୟର ଧର୍ମ କେବଳ ବିଧାତାଙ୍କର ନିଦେଶ ନୁହେ; ତହିଁରେ ସଂପୂର୍ଣ୍ଣ ନିଜତ୍ୱ ଅଛି। ଏହିପରି ଧର୍ମ, କର୍ତ୍ତବ୍ୟରେ ପ୍ରତିଷ୍ଠିତ ରହି ଆର୍ଯ୍ୟ ବିମଳ ସ୍ୱାଧୀନତା ଭୋଗକରେ। ସେଥିରେ ଗୁରୁର ଉପଦେଶ ବା ନିଦେଶ ପରି କେତେକ ଆପାତବାଧତା ଥାଇପାରେ; କିଂତୁ ତାହା ପରିଣାମରେ ଅମୃତପରି ସରସ। ଆତ୍ମକଲ୍ୟାଣର ଜ୍ଞାନ ନ ଥିଲାବେଳେ, ସାଧାରଣ ଲୋକବ୍ୟବହାରରେ ବେଳେବେଳେ ତାହା ଆପାତନୀରସ ବୋଧହେଲେହେଁ, ପରିଣାମରେ ପ୍ରୀତିକର ଓ ସଂତୋଷବିଧାୟକ। ପରର ଅଧୀନରେ ବାଧ୍ୟ ହୋଇ କାର୍ଯ୍ୟ କଲାବେଳେ, ପରପାଇଁ ନିର୍ମମ ଭାବରେ ଯେଉଁ ଆଦେଶ ପାଳନ କରାଯାଏ, ଏ ଆଦେଶ ସେପରି କଠୋର ନୁହେ, ପରରାଜ୍ୟର କର୍ତ୍ତବ୍ୟ ପରିପୁଷ୍ଟ ନୁହେ। ଋଷି ସେଥିପାଇଁ ଗାଇଅଛଂତି –

''ଯସ୍ତ୍ୱାତ୍ମବାନ୍ ସ ଏବ ସ୍ୱରାଟ୍ ଭବତି।''

ଅର୍ଥାତ୍, ଯେ ଆତ୍ମବାନ୍ ହୁଏ, ସେ ସ୍ୱରାଟ୍ ହୁଏ। ଯେ ଆତ୍ମଲାଭ କରେ, ସେ ସ୍ୱରାଜ ପାଏ– ଅର୍ଥାତ୍ ନିଜେ ନିଜର ରାଜା ହୁଏ; ସମସ୍ତ ବଂଧନରୁ ମୁକ୍ତ ହୁଏ; ପରଂବ୍ରହ୍ମ ଜ୍ୟୋତିରେ ପ୍ରତିଷ୍ଠିତ ହୁଏ। ଆର୍ଯ୍ୟ ଧର୍ମପଂଥା ଅନୁସରଣ କରି, ଏହି ପରଂବ୍ରହ୍ମରେ ପ୍ରତିଷ୍ଠିତ ହୋଇଅଛି। ନିଜକୁ ବିଶ୍ୱପରିବାରର ସଂତାନ ବୋଲି ଅନୁଭବ କରିଅଛି; ସମସ୍ତ ବିଶ୍ୱତଂତ୍ରର ଶୁଦ୍ଧ, ପ୍ରୀତିକର ଓ ସ୍ୱଚ୍ଛ ଆଭାସ ନିଜ ଭିତରେ ଦେଖିଅଛି; ବିଶ୍ୱୈକତ୍ୱ ଭାବ ହୃଦୟରେ ଧାରଣା କରି ଆତ୍ମଲାଭ କରିବାର ଅଭ୍ୟାସ ତାର ପ୍ରତ୍ୟେକ କାର୍ଯ୍ୟରେ, ପ୍ରତି ଅଂଗଚାଳନରେ, ପ୍ରତି ନିଃଶ୍ୱାସରେ ପର୍ଯ୍ୟଂତ ଦେଖାଦେଇଅଛି।

ଏହି ବିସ୍ତୀର୍ଣ୍ଣ ଭାବହିଁ ପ୍ରକୃତ ଆର୍ଯ୍ୟଭାବ। ଏହି ଗଭୀର ଓ ବ୍ୟାପକ ଆଧ୍ୟାତ୍ମିକତା ଆର୍ଯ୍ୟ-ଜୀବନର ମୂଳାଧାର, ପରମ ପୀଠ; ଆତ୍ମବ୍ୟାପ୍ତିର ଅଧିଷ୍ଠାନ। ଧର୍ମ ଓ କର୍ତ୍ତବ୍ୟ-ନିରତ ଆର୍ଯ୍ୟ-ପ୍ରାଣର ଏହି ଆଧ୍ୟାତ୍ମିକ ବ୍ୟାପକତା, ପୁଣି ସରସ ଆତ୍ମଭାବ ଓ ଆତ୍ମନିବେଶ ଆର୍ଯ୍ୟର ଆର୍ଯ୍ୟତ୍ୱ। ଆତ୍ମସମର୍ପଣରେ ଆର୍ଯ୍ୟର ଆତ୍ମଲାଭ; ଆଦେଶପାଳନରେ ଆର୍ଯ୍ୟର ସ୍ୱଧର୍ମ। ଆର୍ଯ୍ୟର ଏହା ଦର୍ଶନ– ମତ ନୁହେ; ଯୁକ୍ତିର ଖେଳ ବା ତର୍କବାଦର ଅହଂକାର ନୁହେ– ଏହା ତାର ନିତ୍ୟ କ୍ରିୟା; ଏଥିରେହିଁ ସେ ଜୀବନଧାରଣକରେ।

□□□

# ପଂଚମ ଅଧ୍ୟାୟ

## ଆର୍ଯ୍ୟଜୀବନର ସାଧନା – ଆତ୍ମପ୍ରସାର

ଜୀବନ ସାଧନାମୟ; ସାଧନାରେ ସିଦ୍ଧି ହୁଏ, ଉଦ୍ଦେଶ୍ୟ ସାଧିତ ହୁଏ, ଆଦର୍ଶ ପ୍ରାପ୍ତି ହୁଏ। ଆର୍ଯ୍ୟଭୂମିରେ ଏ ନୂଆ କଥା ନୁହେ। ବ୍ୟକ୍ତି-ଜୀବନରେ, ପରିବାରରେ, ସମାଜରେ, ସର୍ବତ୍ର ଆର୍ଯ୍ୟଜୀବନ ସାଧନାମୟ। ବ୍ରାହ୍ମଣର ଜୀବନକୁ ସମାଜର ଆଦର୍ଶ ଧରିଲେ ଦେଖାଯାଏ, ସକାଳୁ ପୁଣି ସକାଳ ପର୍ଯ୍ୟନ୍ତ ତାହାର କ୍ରିୟାକଳାପ ଅନବଚ୍ଛିନ୍ନ ଭାବରେ ବଂଧା ହୋଇ ରହିଅଛି; ଆଳସ୍ୟ ବା ଅପଚାରର ଅବକାଶ ନାହିଁ। କେବଳ ବ୍ରାହ୍ମଣର କାହିଁକି, ସମସ୍ତଂକ ଜୀବନରେ ଏହିପରି କର୍ମସାଧନାର ପଂଥା ରହିଅଛି। ଏ ସବୁକୁ ବର୍ଣ୍ଣ-ଧର୍ମ କହଂତି। ଏ ତ ଗଲା ପ୍ରତିଦିନର କ୍ରିୟା; ଏହା ଛଡ଼ା ସମସ୍ତ ଜୀବନକୁ ସାଧନା-ପରଂପରାରେ ବାଂଧି ରଖିବା ପାଇଁ ଆଶ୍ରମଧର୍ମର ବିଧି। ଜୀବନରେ ଆର୍ଯ୍ୟ ଯେ ଚତୁରାଶ୍ରମ ବାଂଧି, ସର୍ବଦା ଜୀବନକୁ କ୍ରିୟାବାନ୍ ଓ ଉପଯୋଗୀ କରି ଗଢ଼ିଅଛି, ତାହା ସମସ୍ତେ ଜାଣିଥିବେ। ପ୍ରଥମେ ବିଦ୍ୟାଭ୍ୟାସର କଠୋର ବିଧାନ; ତା'ପରେ ସଂଯତ ସାମାଜିକ ଗାର୍ହସ୍ଥ୍ୟ; ତହିଁ ଉତ୍ତାରୁ ବାନପ୍ରସ୍ଥରେ ଆତ୍ମୋନ୍ନତି ନିମଂତେ ଯୋଗ ଓ ଧର୍ମାଚରଣ ଅଭ୍ୟାସ; ସର୍ବଶେଷରେ ନିର୍ମୁକ୍ତ ଭିକ୍ଷୁର ଜନସେବା। ଆର୍ଯ୍ୟ ଏସବୁ ମହାସାଧନା-ପରଂପରାରେ ଜୀବନ ଗଢ଼ିବାର ବ୍ୟବସ୍ଥା କରି ରଖିଅଛି; ସମସ୍ତ ଜୀବନକୁ କର୍ତ୍ତବ୍ୟର ଗୋଟିଏ ଚିର ସାଧନାଭୂମି କରି ରଖିଅଛି। ଧର୍ମର ଅଭ୍ୟାସ ଓ ଈଶ୍ୱର ପଦାର୍ଥର ଅବବୋଧ ନିମଂତେ ବେଦାଂତ-ତତ୍ତ୍ୱର ଉପଦେଶରେ ଜ୍ଞାନଯୋଗର ଅଭ୍ୟାସ ଓ କର୍ମଯୋଗର ସାଧନାଠାରୁ ଜନସାଧାରଣ ପାଇଁ ପୁରାଣର ରୁଚିକର ଆଖ୍ୟାୟିକା ପର୍ଯ୍ୟନ୍ତ, ନାନା ଭାବରେ ନୀତିର ପ୍ରଚାର ଓ ଅଭ୍ୟାସ ଏ ଭୂମିରେ ଚିରକାଳ ଚାଲିଅଛି। ଜୀବନରେ ଆର୍ଯ୍ୟ କେବେହେଁ ଲକ୍ଷ୍ୟଭ୍ରଷ୍ଟ ହୋଇ ନାହିଁ କିଂବା ଲକ୍ଷ୍ୟହୀନ ହୋଇ ଚାଲି ନାହିଁ। ଜୀବନର ସମସ୍ତ ପ୍ରବୃତ୍ତି ଓ କାର୍ଯ୍ୟକଳାପ ସଂଯତ କରି, ସେ ସ୍ଥିର ଆଦର୍ଶ ଅନୁସରଣ କରିଅଛି ଏବଂ ସାଧନାରେ ସିଦ୍ଧି ମଧ୍ୟ ଲଭିଅଛି।

ଆର୍ଯ୍ୟଜୀବନର ଧର୍ମ-ଧାରଣା ପ୍ରସଂଗରେ ଏସବୁ ବିଷୟ ପ୍ରତି ଲକ୍ଷ୍ୟ କରାଯାଇଅଛି; ମାତ୍ର ଏଠାରେ ସେହି କଥାକୁ ସାଧନା ଓ ସିଦ୍ଧି ଲକ୍ଷ୍ୟରେ ବୁଝାଇଦେବା ପ୍ରୟୋଜନ। ଆର୍ଯ୍ୟଜୀବନ କର୍ତ୍ତବ୍ୟମୟ, କର୍ମରେ ଗାଢ଼; ଜୀବନର କର୍ତ୍ତବ୍ୟରାଶିକୁ ଈଶ୍ୱରଂକର ଆଦେଶ ଓ ବିଶ୍ୱତଂତ୍ରର ଅଂଗୀଭୂତ ମଣି ସେହି ଅନୁସାରେ ଆର୍ଯ୍ୟ ନିଜର କ୍ରିୟା-ବିଧାନ କରିବାକୁ ଚିରକାଳ ଅଭ୍ୟାସ କରିଅଛି।

ମନୁଷ୍ୟ ସ୍ୱଭାବତଃ ସ୍ୱାର୍ଥପର। ନିଜେ ପ୍ରକୃତରେ କି ପଦାର୍ଥ, କାହିଁକି ବା ତାର ଜନ୍ମ, ବିଶ୍ୱର ଅନ୍ୟାନ୍ୟ ବସ୍ତୁ ସଂଗେ ତାର କି ସଂବଂଧ, ଏ ସବୁ କଥା ସେ ସହଜରେ ବୁଝେ ନାଇ; ବୁଝିବାକୁ ପ୍ରୟାସ ମଧ କରେ ନାଇ। 'ମୁଁ', 'ମୋର', 'ମତେ' ଜହିଁରେ ସେ ସ୍ୱାର୍ଥରେ ମନ ଦିଏ। ଏ ସ୍ୱାର୍ଥର ବାସ୍ତବରେ କିଛି ଅର୍ଥ ନାଇ। ବିଶ୍ୱତଂତ୍ରରୁ ବିଚ୍ଛିନ୍ନ ହୋଇ 'ମୁଁ' ବୋଲି କିଛି ପଦାର୍ଥ ନାଇ। ବିଶ୍ୱତଂତ୍ରରେ ମୋର ଗୋଟିଏ ସ୍ଥାନ ଅଛି ସତ, ବିଧାତାଂକ ସୃଷ୍ଟିରେ ମୋର କେତେଗୁଡ଼ିଏ ସ୍ୱତଂତ୍ର କର୍ତବ୍ୟ ଅଛି ସତ; କିଂତୁ ସେ ତଂତ୍ରରୁ ବିଚ୍ଛିନ୍ନ ହେଲେ 'ମୁଁ' କେହି ନୁହେ, କିଛି ନୁହେ। ଏସବୁ କଥା ମନୁଷ୍ୟ ସବୁବେଳେ ବୁଝେ ନାଇ; ପୁଣି ଦାର୍ଶନିକ ଚିତାର ପ୍ରକ୍ରିୟା ଘେନି ବୁଝିଲେ ମଧ ସେହି ଅନୁସାରେ କ୍ରିୟାବାନ୍ ହୁଏ ନାଇ। ଏହାକୁହିଁ ଶାସ୍ତ୍ରକାରମାନେ ମୋହ, ମାୟା, ଅଜ୍ଞାନ ପ୍ରଭୃତି ନାମ ଦେଇଅଛଂତି। ଏହି ଅଜ୍ଞାନରୁ ମୁକ୍ତ ହୋଇ, ଜ୍ଞାନ ଅନୁସାରେ ନିଜର କ୍ରିୟା-ବିଧାନ କରିବାକୁ ମନୁଷ୍ୟର ଚେଷ୍ଟା ଓ ଅଭ୍ୟାସ ଦରକାର। ଏହାହିଁ ଜୀବନର ପରମ ସାଧନା।

ଆର୍ଯ୍ୟ ଯେ ଜୀବନର ଏହି ସାଧନା ବୁଝିଥିଲା, ତାହା ବୁଝାଇ କହିବା ଅନାବଶ୍ୟକ। ସଂକୀର୍ଣ ସ୍ୱାର୍ଥପରତାରୁ କାଢ଼ାରି ଜୀବନକୁ ଜଗତ୍‌ରେ ମିଶାଇଦେବା ଆର୍ଯ୍ୟର ଚିର ଲକ୍ଷ୍ୟ। ଅନଂତ କର୍ତବ୍ୟ ମଧରେ ସେଥିପାଇଁ ସେ ଆତ୍ମୋତ୍ସର୍ଗ କରେ। ଏହି ସାଧନାରେ ତାହାର ଆତ୍ମପ୍ରସାର ଏତେ ଦୃଢ଼ ଯେ, ସେ ଚରାଚର ସର୍ବତ୍ର ନିଜ ପରି ଆତ୍ମା ଦେଖି, ଅନଂତ ପ୍ରେମରେ ପ୍ରାଣକୁ ମିଶାଇଦିଏ। ଜଗତ୍‌ରେ ଯେଉଁ ବିଶ୍ୱାତ୍ମାର ଉଦ୍ଭେଦ ଦେଖେ, ନିଜେ ସେହି ଆତ୍ମା ବୋଲି ଅନୁଭବ କରି ଆନଂଦରେ କହେ 'ସୋଽହଂ'; ଅର୍ଥାତ୍, ସେହି ମୁଁ। ସେହି ଆତ୍ମପ୍ରସାର ତାହାର ସାଧନା ଏବଂ 'ସୋଽହଂ' ବୁଦ୍ଧି ବା ଆତ୍ମଲାଭ ନିମଂତେ ଏହି ଅନନ୍ୟସାଧାରଣ ଆତ୍ମୋତ୍ସର୍ଗହିଁ ତାହାର ସିଦ୍ଧିର ଲକ୍ଷଣ। ଏହି 'ସୋଽହଂ' ବା ଆତ୍ମଲାଭ ତାହାର ଆଦର୍ଶ। ଅନଂତ କର୍ତବ୍ୟଲୀଳା ମଧରେ ନିଜର ମହୀୟ ବିଶ୍ୱବ୍ୟକ୍ତିତ୍ୱ ଅନୁଭବ କରିବାହିଁ ତାହାର ଜୀବନ।

ମନେ ରଖିବାକୁ ହେବ, ଏ ଆତ୍ମୋତ୍ସର୍ଗ, ଏ ଆତ୍ମପ୍ରସାର ସାଧନା ଆର୍ଯ୍ୟଭୂମିରେ କେବେ ଦର୍ଶନ ବା ନୀତିବାଦର ଉପଦେଶ ନୁହେ। ଆର୍ଯ୍ୟର ଅତି ସାମାନ୍ୟ ଜୀବନ-କ୍ରିୟାରେ ମଧ ଏହାହିଁ ଦେଖିବାକୁ ମିଳେ। ହରିଶ୍ଚଂଦ୍ରଂକର ଆତ୍ମଦାନ, ଦଧୀଚିଂକର ଆତ୍ମୋତ୍ସର୍ଗ ପ୍ରଭୃତି ବହୁ ପ୍ରାଚୀନ; ସେ ସବୁ ପୁରାଣର କଥା। ହର୍ଷବର୍ଦ୍ଧନଂକ ଅନନ୍ୟସାଧାରଣ ଉଦାରତା ଓ ମେଗାସ୍ଥିନିସ୍, ଫାଇଆନଂକ ବର୍ଣିତ ଭାରତବାସୀ, ଇତିହାସର କଥା। ଏପରି ଜାତୀୟ ଚରିତ୍ରର ଆଲେଖ୍ୟ ଏ ଜାତୀୟ ସାହିତ୍ୟ ତଥା ଇତିହାସରେ ପୂର୍ଣ ରହିଛି। ଦ୍ୱିଜାତିର ସନ୍ନ୍ୟାସ ଓ ଯୋଗସାଧନାଠାରୁ ଶୂଦ୍ରର ସେବାଧର୍ମ ପର୍ଯ୍ୟଂତ, ସବୁ ମୁକ୍ତି ବା ଆଦର୍ଶଲାଭର ପଂଥା ବୋଲି ଧର୍ମଶାସ୍ତ୍ରରେ ଅକ୍ଷୟ ଅକ୍ଷରରେ ଉପଦିଷ୍ଟ ହୋଇଅଛି ଏବଂ ସେହି ସବୁ ଜାତି ଜନସାଧାରଣର

ପ୍ରାକୃତ କ୍ରିୟାରେ ଥିଲା ବୋଲି ପୁରାଣ, ପ୍ରବଚନାଦିରେ ସ୍ପଷ୍ଟ ଉଦାହୃତ ଓ ପ୍ରମାଣିତ ରହିଅଛି। ପୁରାଣ, ପ୍ରବଚନ, ଇତିହାସ, ସାହିତ୍ୟର କଥା ଛାଡ଼ିଦେଲେ ମଧ୍ୟ, ଆର୍ଯର ଦୈନଂଦିନ ଜୀବନ କ୍ରିୟାରେ ସର୍ବଦା ଏହି ସାଧନା ଏବଂ ଏହି ଆଦର୍ଶ-ଲାଭର ପ୍ରଯତ୍ନ ଦେଖିବାକୁ ମିଳେ।

ଆର୍ଯର ଜୀବନ କର୍ମମୟ। ସେ ନିଜର କର୍ମମୟ ଜୀବନରେ ମଧ୍ୟ କୌଣସି ଆସକ୍ତି ବା ଫଳଲାଭର ଆଶା ରଖି ନାଇ। ତାର ବିଶ୍ୱାସ, ଜୀବନରେ ଫଳ ଆଶାରେ କର୍ମ କଲେ, କର୍ମରେ ମୋର ବୋଲି ଅହଂକାର ଆସିବ; ବ୍ୟକ୍ତିତ୍ୱରେ ବିଶ୍ୱଭାବ ସ୍ଖଳିତ ହେବ; ଆତ୍ମଲାଭ ହେବ ନାଇ, ସାଧନା ପଣ୍ଡ ହେବ; ସିଦ୍ଧି ଆସିବ ନାଇ; ମୁକ୍ତି ମିଳିବ ନାଇ।

ସଂସାର ଆର୍ଯ-ଦୃଷ୍ଟିରେ ଗୋଟିଏ ବଂଧ, ଗୋଟିଏ କର୍ମ ବା କର୍ତବ୍ୟରାଶିର ପରଂପରା, ଗୋଟିଏ କର୍ମମୟ ସାଧନାର କ୍ଷେତ୍ର। ଏହି ବଂଧ ବା ଆବଦ୍ଧତା ହେତୁରୁ ସ୍ୱାର୍ଥଭାବ ବା ଅହଂକାର-ବୁଦ୍ଧି ଆସେ। ନିଜକୁ କେତେଗୁଡ଼ିଏ ସଂପର୍କ, କର୍ତବ୍ୟ ଓ ସୁଖ ଦୁଃଖ ମଧରେ ଆବଦ୍ଧ ମଣିବା ହେତୁରୁ ତାହାର ବିଶାଳ ବିଶ୍ୱଦୃଷ୍ଟି ସୀମାବଦ୍ଧ ହୁଏ। ସେ 'ମୋର' ବୋଲି ଅହଂକାର କରେ; କର୍ମରେ କର୍ତୃତ୍ୱ କରି, ଫଳ-ଆଶା ରଖେ। ସଂସାରୀ ପ୍ରାଣୀର ଏହା ସ୍ୱାଭାବିକ ପ୍ରବୃତ୍ତି; ତେଣୁ ସଂସାରରେ କର୍ମର ସାଧନା।

ସର୍ବଦା ନିରବଚ୍ଛିନ୍ନ କର୍ତବ୍ୟର ଅଭ୍ୟାସ କରିବାକୁ ହେବ। ଅଭ୍ୟାସବଳରେ ଜୀବନକୁ ବିଶ୍ୱଧର୍ମର ଅଂଗୀଭୂତ ମଣି, କେବଳ କର୍ତବ୍ୟମୟ ବୋଲି ଅନୁଭବ କରିବାକୁ ହେବ। ଏ ଅଭ୍ୟାସରେ ଅସମର୍ଥ ହେଲେ, ଆର୍ଯର ବିଶ୍ୱାସ, ଭଗବାନ୍ କହି ଅଛଂତି– ''ମତ୍‌କର୍ମ ପରମୋଭବ''; ଅର୍ଥାତ୍ ମୋ'ରି କର୍ମ କରୁଅଛ ବୋଲି ସର୍ବଦା ଧାରଣା କର। ସେଥିରେ ସାଧନାର ପଂଥା ସୁଗମ ହେବ। ଏହି ସାଧନାରେ ଆତ୍ମା ଭସାଇଦେଲେ, ଲୋକ ''ନାପ୍ନୋତି କିଲ୍‌ବିଷଂ'' ଅର୍ଥାତ୍ ଆଉ ମଳିନତା ପାଏ ନାଇ। ଅର୍ଥାତ୍; ବିଶ୍ୱତଂତ୍ରୈକ ଧାରଣାରୁ ଆଉ ଭ୍ରଷ୍ଟ ହୁଏ ନାଇ; ତାର ଆଉ ଅଜ୍ଞାନଜଡ଼ିତ ଆତ୍ମମୋହ ରହେ ନାଇ। ସେ ବଂଧନରୁ ମୁକ୍ତ ହୁଏ; ତାର ସିଦ୍ଧିଲାଭ ହୁଏ।

ଜନକାଦି ସିଦ୍ଧପୁରୁଷମାନେ ଏହି ସିଦ୍ଧିଲାଭ ବିଷୟରେ ଆର୍ଯର ଐତିହାସିକ ଆଦର୍ଶ। ଜନକ ମିଥିଳାର ରାଜା ଥିଲେ; ପ୍ରଜାରଂଜନ ଓ ପ୍ରଜାପାଳନରେ ତତ୍ପର ଥିଲେ; ନିତ୍ୟ ନିୟତ ଭାବରେ ନିଜର ସ୍ଥିର ଧର୍ମ, କର୍ତବ୍ୟରେ ନିରତ ଥିଲେ; ତଥାପି ସେ ସିଦ୍ଧ ଓ ମୁକ୍ତ ଥିଲେ ବୋଲି, ସେ କହିପାରିଥିଲେ– ''ମିଥିଳାୟାଂ ପ୍ରଦୀପ୍ତାୟାଂ ନ ମେ ଲାଭୋ ନ ମେ କ୍ଷତି'', ଅର୍ଥାତ୍ ମିଥିଳା ପୋଡ଼ିଗଲେ ମଧ୍ୟ ମୋର କିଛି ଲାଭ ବା କ୍ଷତି ନାଇ। ଏହା ବୋଲି ସେ ମିଥିଳା ପ୍ରତି ନିଜର କର୍ତବ୍ୟ ନ କରି ତିଳେମାତ୍ର ଅବହେଳା ଦେଖାଇ ନାହାଂତି। ସମସ୍ତ କର୍ତବ୍ୟର

ସଂଯତ ଓ କଠୋର ସାଧନା ମଧ୍ୟରେ, ପ୍ରଜାରଂଜନ ନିମଂତେ ପ୍ରାଣରେ ବିଶାଳ ବ୍ୟାକୁଳତା ମଧ୍ୟରେ ମିଥିଳାର ରାଜା ହୋଇ ମଧ୍ୟ ଏପରି ନିର୍ଲିପ୍ତ ଓ ଫଳାକାଂକ୍ଷା ରହିତ ଭାବରେ କାର୍ଯ୍ୟ କରିବା କେବଳ ଆର୍ଯ୍ୟଭୂମିରେ ସଂଭବି ଥିଲା। ସେ ନିଜକୁ ବିଶ୍ୱଶକ୍ତିର ଗେ ନିର୍ଦ୍ଦିଷ୍ଟ ଅଂଶ ବୋଲି ଧାରଣା କରିପାରିଥିଲେ। ବିଶ୍ୱର ପ୍ରତ୍ୟେକ ପଦାର୍ଥରେ ଙ୍କର ଯେତିକି ମମତା, ନିଜଠାରେ ତାଂକର ଠିକ୍ ସେତିକି ମମତା ଥିଲା। ଏରୋପରେ ବଚନ ଅଛି, 'ରୋମ ନଗର ପୋଡ଼ିଗଲାବେଳେ, ରୋମର ସମ୍ରାଟ୍ ନେରୋ ଆନଂଦରେ ବେହେଲା ବଜାଇ ସଂଗୀତ କରୁଥିଲେ।' ତାଂକର ମଧ୍ୟ ରୋମରେ ମମତା ନଥିଲା; କିଂତୁ ସେ ମମତା ନ ଥିବା କେବଳ ବିଳାସଜନିତ ଅବହେଳାର ଫଳ। ଯେକୌଣସି ବ୍ୟସନୀ ବିଳାସୀର ଏପରି ଆପାତନିର୍ମମତା ଆସିପାରେ; କିଂତୁ ଜନକଂକର ନିର୍ମମ କର୍ମସାଧନା, ଧର୍ମ-ଧାରଣାରେ ବିଶ୍ୱତଂତ୍ରୈକ ବୁଦ୍ଧି ଏଥିରୁ ସଂପୂର୍ଣ୍ଣ ଭିନ୍ନ। ଜନକଂକର ନିର୍ମମତାରେ ବ୍ୟସନର ଅବହେଳା ନାଇ। ସେ ନିର୍ମମ ଥିଲେ; କ୍ରିୟାହୀନ ନ ଥିଲେ। ବିଶାଳ ଧର୍ମଭାବରେ ବିଶ୍ୱପ୍ରେରଣା ଅନୁଭବ କରି, ସେ ବିଶ୍ୱତଂତ୍ରରେ ନିଜର ନିର୍ଦ୍ଦିଷ୍ଟ କର୍ତ୍ତବ୍ୟ କରିବା ନିମଂତେ ନିର୍ଲିପ୍ତ ଭାବରେ କର୍ମନିରତ ଥିଲେ।

ବିଧାତାଂକ ରାଜ୍ୟରେ ବିଧାତା ସ୍ୱୟଂ କ୍ରିୟାମୟରୂପେ ରହିଛଂତି। ବିଶ୍ୱତଂତ୍ର ସେହି ବିଧାତୃଶକ୍ତିରେ ଆତଯାତ ହେଉଅଛି। 'ମୁଁ' ମଧ୍ୟ ସେହି ଶକ୍ତି— ସେହି ଶକ୍ତି ମୋ ଭିତରେ ପ୍ରକଟି ଉଠୁଅଛି। ସୂର୍ଯ୍ୟ ନ ଥିଲେ ଜୀବନ-ଜଗତ୍‌ର ସୌଂଦର୍ଯ୍ୟ ଓ ଜୀବନ ନାଇ। ଗ୍ରହ ନ ଥିଲେ ସୂର୍ଯ୍ୟର ବଦାନ୍ୟତା ଓ ଉପଯୋଗିତା ମଧ୍ୟ ନାଇ। ସେହିପରି 'ମୁଁ' ନ ଥିଲେ ବିଶ୍ୱ ନାଇ; ବିଶ୍ୱ ନ ଥିଲେ 'ମୁଁ' ନାଇ; ଅର୍ଥାତ୍ ମୁଁ ସେହି 'ସୋଽହଂ', ଏହାହିଁ ଜୀବନର ଆଦର୍ଶ ଏବଂ ଏହାହିଁ ତାହାର ମୁକ୍ତି।

ସୂର୍ଯ୍ୟ ଓ ଗ୍ରହ-ଜଗତ୍ ଯେପରି ପରସ୍ପରର ଅପେକ୍ଷା ରଖଂତି, ପରସ୍ପର ପ୍ରତି ସେମାନଂକର ଯେପରି ଆପେକ୍ଷିକ ଉପଯୋଗିତା, ଜୀବନ ସଂଗେ ବିଶ୍ୱର ସେହି ଆପେକ୍ଷିକ ଭାବହିଁ ବଂଧ। ସେ ଆପେକ୍ଷିକ ଭାବ ଯେତେ ଦୃଢ଼ ହୁଏ, ବ୍ୟକ୍ତି ସେତେ ଆପଣାକୁ ଭିନ୍ନ ଓ ସ୍ୱତଂତ୍ର ଭାବରେ ଉପଯୋଗୀ ବୋଲି ମନେକରେ। ସେଥିରେ ତାହାର ବଂଧ ଦୃଢ଼ ହୁଏ। ଦୃଢ଼ ହେଉ ବା ଶିଥିଳ ହେଉ, ଏହି ବଂଧ-ଧାରଣାରେ ମାନବ ଅଂଧ ହେଉ ବା ମୁକ୍ତ ହେଉ, ଏହି କର୍ମବଂଧ ମଧ୍ୟରେ ତାକୁ ରହିବାକୁ ହେବ। ଏହି କର୍ମବଂଧ ମଧ୍ୟରେ ତେଣୁ ଆର୍ଯ୍ୟ ମୁକ୍ତି କାମନା କରେ। ଜୀବନର କର୍ମସାଧନାରେ ଏହି ମୁକ୍ତି ସାଧକର ଲକ୍ଷ୍ୟ। କର୍ମହିଁ ଆର୍ଯ୍ୟର ସାଧନା, କର୍ତ୍ତବ୍ୟହିଁ ପଂଥା; ସେଥିପାଇଁ ସେ ଈଶ୍ୱର-ବାଣୀ ଶୁଣିଅଛି—

''ନିୟତଂ କୁରୁକର୍ମତ୍ୱଂ କର୍ମ ଜ୍ୟାୟୋହ୍ୟ କର୍ମଣଃ।''

ଅର୍ଥାତ୍, ଈଶ୍ୱର କହୁଚଂତି— ମାନବ, ତୁ ସର୍ବଦା କର୍ମ କର। ନ କରିବାଠାରୁ କର୍ମ କରିବା ଭଲ।

କର୍ମରୁ ଆସକ୍ତି ଛାଡ଼ିବା, କର୍ମ ଛାଡ଼ିବା ଏକ ନୁହେ। ସଂସାରରେ ଥିବାଯାଏ କର୍ମ କରିବାକୁ ହେବ; କାରଣ – ''ଶରୀରଯାତ୍ରାପି ଚ ତେ ନ ପ୍ରସିଧ୍ୟେଦ କର୍ମଣଃ।'' ଅର୍ଥାତ୍ କର୍ମ ନ କଲେ, (ସଂସାରର ଅନ୍ୟ କଥା ଦୂରେ ଥାଉ) ତୋର (ସାମାନ୍ୟ) ଶରୀରଯାତ୍ରାସୁଦ୍ଧା ଚଳିବ ନାଇ।

ସଂସାର କର୍ମଭୂମି। ବିଶ୍ୱତଂତ୍ର କର୍ମରେ ଚାଲୁଅଛି। କର୍ମ ବିନା ସଂସାର ଅସଂଭବ। ସ୍ୱୟଂ ଜନକ ପ୍ରଭୃତି କର୍ମଛାଡ଼ିପାରିଥିଲେ ବା କର୍ମରୁ ଆସକ୍ତିହୀନ ହୋଇଥିଲେ। ସେମାନେ ମଧ୍ୟ ''କର୍ମଣୈୖବହି ସଂସିଦ୍ଧି ମାସ୍ଥିତାଃ (ଜନକାଦୟଃ)।'' ଅର୍ଥାତ୍ କେବଳ କର୍ମରେହିଁ ସିଦ୍ଧି ଲଭିଥିଲେ।

ଜଗତ୍‌ର ଏ କର୍ମତଂତ୍ରତା ବିଷୟରେ ଦୃଢ଼ ଧାରଣା ଆସିଲେ ସିଦ୍ଧି ହୁଏ। ସେତେବେଳେ କର୍ତବ୍ୟକୁହିଁ ମାନବ ଜୀବନ ପରି ଦେଖେ। ଜଗତ୍‌ରେ ଯେ ଯାହାର ନିର୍ଦ୍ଦିଷ୍ଟ କର୍ମ କରିବେ। କୌଣସି କର୍ମ ନୀଚ ବା ଉଚ୍ଚ ନୁହେ। ସେଥିପାଇଁ କୁହାଯାଏ –

''ବିଦ୍ୟାବିନୟସଂପନ୍ନେ ବ୍ରାହ୍ମଣେ ଗବି ହସ୍ତିନି।
ଶୁନିଚୈବ ସ୍ୱପାକେ ଚ ପଣ୍ଡିତାଃ ସମଦର୍ଶିନଃ।''

ଅର୍ଥାତ୍ ବିଦ୍ୟାବିନୟସଂପନ୍ନ ଲୋକ, ବ୍ରାହ୍ମଣ, ଗୋରୁ, ହାତୀ, କୁକୁର, ଚଂଡାଳ – ସବୁଠାରେ ପଣ୍ଡିତ ସମଜ୍ଞାନ କରେ।

ଏହି ସମଜ୍ଞାନହିଁ ସାଧନାରେ ସିଦ୍ଧି। ଏହି ସମଜ୍ଞାନ ଆସିଲେ ମୁକ୍ତି ହୁଏ। ଏହି ସମଜ୍ଞାନ ଆସିବା ପାଇଁ କର୍ମ, ଜ୍ଞାନ, ଭକ୍ତି ପ୍ରଭୃତି ନାନା ସାଧନା। ଏହି ସମଜ୍ଞାନହିଁ ବିଶ୍ୱତଂତ୍ର ସଂବଂଧରେ ଯଥାର୍ଥ ଜ୍ଞାନର ଫଳ। ଏହାକୁହିଁ ଆର୍ଯ୍ୟମାନେ ଆତ୍ମଜ୍ଞାନ କହୁଅଛଂତି। ମୁଁ କିଏ, କଣ – ଏ ଜ୍ଞାନ ଆସିଲେ, ବ୍ରାହ୍ମଣର ଜ୍ଞାନ ହୁଏ। ବିଶ୍ୱତଂତ୍ରର ନିୟମବଦ୍ଧ କର୍ମମୟତା ବୁଝିପାରି, ମାନବ କ୍ଷୁଦ୍ର ଅହଂକାର ଛାଡ଼ିଦିଏ। ପ୍ରକୃତ ଆତ୍ମଜ୍ଞାନରେ ଆତ୍ମୋତ୍ସର୍ଗ କରି ଆତ୍ମଲାଭକରେ। ସେଥିପାଇଁ ବଚନ ଅଛି – ''ଉଦ୍ଧରେଦାତ୍ମନାଽତ୍ମାନଂ।'' ଅର୍ଥାତ୍, ଆତ୍ମାରେ ଆତ୍ମାକୁ ଉଦ୍ଧାର କରିବ।

ଅନଂତ ବିଶ୍ୱ-ଆତ୍ମାର ଜ୍ଞାନ ଆସିଲେ କ୍ଷୁଦ୍ର ମାନବାତ୍ମାର ଅହଂକାର ସେଥିରେ ବିଲୀନ ହୁଏ। ମନୁଷ୍ୟ ଜାଣିବ, ମୁଁ କେହି ନୁହେ। ବାସ୍ତବିକ ଅନଂତ ବିଶ୍ୱକର୍ମରେ ମୋର ଗୋଟିଏ ଯଥୋଚିତ ସ୍ଥାନ ମାତ୍ର ଏବଂ ସେହି ହିସାବରେ ସୂର୍ଯ୍ୟ, ଚଂଦ୍ର, ଗ୍ରହ, ତାରାଠାରୁ କୁକୁର, ଚଂଡାଳ, ତରୁ, ତୃଣ, କାଠ, ପର୍ବତ ପର୍ଯ୍ୟଂତ ସମସ୍ତଂକର ଗୋଟିଏ ଗୋଟିଏ ସ୍ଥାନ। ମୁଁ ଯାହା, ସେମାନେ ସେଇଆ; ସମସ୍ତ ବିଶ୍ୱ ସେଇଆ – ଏ ଭାବର ଧାରଣା, ଏହି ଆତ୍ମପ୍ରସାର, ଆତ୍ମାକୁ ଏହିପରି ଜଗତ୍‌ରେ ବ୍ୟାପ୍ତ ଦେଖିବାହିଁ ଆର୍ଯ୍ୟର ସମସ୍ତ ସାଧନାର ଲକ୍ଷ୍ୟ ଏବଂ ଏହି ବିଶ୍ୱତଂତ୍ର ଜ୍ଞାନ ବା ବିଶ୍ୱାତ୍ମାର ଅବବୋଧ ଓ ତହିଁରେ ପ୍ରକୃତ ଧାରଣାହିଁ ତାହାର ମୁକ୍ତି।

କଥାଟି ଏପରି ଦାର୍ଶନିକ ଭାବରେ ବୁଝିବା କାହାରି କାହାରି ପକ୍ଷରେ ଦୁରଧିଗମ୍ୟ ହୋଇପାରେ। ବିଶ୍ୱଶକ୍ତିର ଅନଂତ ବିକାଶ ମୋ ଭିତରେ ହେଉଅଛି।

ବିଶ୍ୱଶକ୍ତିର ବିକାଶହିଁ ମୋର ଜୀବନ। ମୁଁ ନ ଥିଲେ ସମସ୍ତ ବିଶ୍ୱ ନାଇ; ସମସ୍ତ ବିଶ୍ୱ ନ ଥିଲେ ମୁଁ ନାଇ। ଏସବୁ କଥା ଗୋଟିଏ ସାଧାରଣ ଉଦାହରଣରେ ବୁଝାଯାଉ।

ଧନ ସଂସାରରେ କେବଳ କାରବାର ଓ ବ୍ୟବହାର ପାଇଁ। ଲୋକେ ସେଥିରେ ଖାଦ୍ୟ, ପେୟ ଓ ପରିଧେୟ କିଣଂତି। କେହି ତାହା ନିଜର ବୋଲି ରଖି ପାରିବେ ନାଇ। ଯେ ଧନ ସଂଚୟ କରଂତି, ସେ ମଧ୍ୟ ତାହା ରଖଂତି ନାଇ। ସେ ଘର ତୋଳଂତି, ବଗିଚା କରଂତି, ବାକ୍ସ ଆଲମାରି କରଂତି। ଶେଷରେ ଏହିପରି ଧନ ଶିଳ୍ପୀ ଓ ଶ୍ରମଜୀବୀମାନଂକ ହାତକୁ ଯାଇ ତାଂକର ଖାଦ୍ୟ ପେୟ ଯୋଗାଏ। ତାହା କଦାପି ସ୍ଥିର ରହିପାରେ ନାଇ। ନିତାଂତ ନ ହେଲେ, ଶେଷକୁ ଚୋର ନିଏ କିଂବା ସମାଜର ଅସଦ୍ ବ୍ୟବସାୟୀମାନେ ଗ୍ରହଣ କରଂତି। ତାହା ବରାବର ଏକ ହାତରୁ ଅନ୍ୟ ହାତକୁ ଯାଏ ଓ ବରାବର ଖାଦ୍ୟ, ପେୟ, ପରିଧେୟ ଯୋଗାଉଥାଏ। ଏହା ଧନର ପ୍ରକୃତି; କିଂତୁ ତଥାପି ଲୋକେ ଧନ ସଂଚୟ କରଂତି, ପୋତି ରଖଂତି; ମନରେ ବିଚାର କରୁଥାଂତି, ସେ ଧନ ତାଂକର; କିଂତୁ ଫଳରେ ବାଧ୍ୟ ହୋଇ ସେ ତାହା ଅନ୍ୟ ହାତରେ ଦିଅଂତି। ଯେ ଜ୍ଞାନୀ; ସେ ତାହା କରଂତି ନାଇ। ଧନର ପ୍ରକୃତି ବିଷୟରେ ତାଂକର ସମ୍ୟକ୍ ଧାରଣା ଥାଏ। ସେ ତାହା ବ୍ୟବହାର ବା ବିତରଣ କରଂତି; ପୋତି ରଖଂତି ନାଇ। ସେଥିରେ ତାଂକର 'ମୋର' ବୋଲି ବିଶେଷ ମମତା ବା ଅହଂକାର ନ ଥାଏ; କିଂତୁ ଏ ଜ୍ଞାନ ଲୋକସାଧାରଣର ସହଜରେ ଆସେ ନାଇ। ସେଥିପାଇଁ ସାଧନା ଦରକାର। ଧନର ପ୍ରକୃତ ଅର୍ଥ ବୁଝିବାରେ ବିଶେଷ ମନୋନିବେଶ କରି ସେହି ଅନୁସାରେ କର୍ମାଭ୍ୟାସ କରିବାହିଁ ସାଧନା। ଏଥିରେ ସିଦ୍ଧି ଆସିଲେ ଆଉ ଧନରେ ମମତା ରହେ ନାଇ।

ଧନ ସଂବଂଧରେ ଯାହା କୁହାଗଲା, ଜୀବନ ସଂବଂଧରେ ତାହାହିଁ ବୁଝିବାକୁ ହେବ। ଜୀବନର ବ୍ୟବହାରହିଁ ତାହାର ଅର୍ଥ; ତାହାର ଯଥାର୍ଥ ଉପଯୋଗିତା ବା ଉଦ୍ଦେଶ୍ୟ। କର୍ମହିଁ ଜୀବନର ବ୍ୟବହାର। ନିର୍ଦ୍ଦିଷ୍ଟ କର୍ମରେ ତାହାର ଯଥାର୍ଥ ଉପଯୋଗିତା ପ୍ରତିପାଦିତ ହୁଏ। ଜଗତ୍‌ରେ ପ୍ରତ୍ୟେକ ଜୀବନର, ପ୍ରତ୍ୟେକ ବସ୍ତୁର ନିର୍ଦ୍ଦିଷ୍ଟ କ୍ରିୟା ଅଛି। ତାହା ନ ରହିଲେ ବିଶ୍ୱତଂତ୍ର ବ୍ୟଂଗ ହେବ। ମାତ୍ର ଏହି ବ୍ୟବହାରର ଭାବ ସହଜରେ ଆସେ ନାଇ। ସେଥିପାଇଁ ସାଧନାର ପ୍ରୟୋଜନ। ଏହି ସାଧନାରେ ସିଦ୍ଧି ଆସିଲେ, ସମସ୍ତ ବିଶ୍ୱଜୀବନର ଭାବ ହୃଦୟରେ ପ୍ରତିଫଳିତ ହୁଏ। ମାନବର ଆଉ ଅହଂକାର ରହେ ନାଇ; ଅଜ୍ଞାନ ଜ୍ଞାନକୁ ଆବୃତ କରିପାରେ ନାଇ; ଜୀବର ମୋହ ନଷ୍ଟ ହୁଏ। ଏହି ମୋହନାଶହିଁ ଆର୍ଯ୍ୟଜୀବନର ସିଦ୍ଧି। କର୍ମର ଅଭ୍ୟାସ, କର୍ମର ପ୍ରକୃତି ଅବବୋଧ ଓ ସମସ୍ତ ବିଶ୍ୱତଂତ୍ରରେ ଆତ୍ମାର ପ୍ରସାର ଧାରଣା କରିବା ଏହି ସିଦ୍ଧିର ପଂଥା। ଏହି ପଂଥାରେହିଁ ଆର୍ଯ୍ୟଜୀବନର ସାଧନା।

ଏ ଯେଉଁ ସାଧନା ଓ ସିଦ୍ଧିର କଥା କୁହାଗଲା, ଏହା ଆର୍ଯର କେବଳ ଦାର୍ଶନିକ ମତବାଦ ନୁହେ, ଆପ୍ତବାକ୍ୟର ନୀତି ଉପଦେଶ ନୁହେ; ଏ କଥା ଏକପ୍ରକାର ପୁରାଣ, ଇତିହାସର ଉଦାହରଣ ଲକ୍ଷ୍ୟକରି ପ୍ରତିପନ୍ନ କରାହୋଇଅଛି। କିଂତୁ କେବଳ ପୁରାଣ, ଇତିହାସ କାହିଁକି, ଜୀବନର ଏ ଲକ୍ଷ୍ୟ ନିମଂତେ ସାଧନା ଆର୍ଯର ନିତ୍ୟ ବ୍ରତ। ଏହି ଆତ୍ମପ୍ରସାର ଓ ଆତ୍ମୋତ୍ସର୍ଗର ନୀତି ଆର୍ଯର ଦୈନଂଦିନ ଅଭ୍ୟସ୍ତ କ୍ରିୟାରେ ମଧ୍ୟ ସ୍ପଷ୍ଟ ଦେଖାଯାଏ। ଏ ଦେଶର ଜନସାଧାରଣଂକ ସରଳ ଈଶ୍ୱରପରାୟଣତା ଓ କର୍ମର ନିଷ୍ଠା, ଅକୃତ୍ରିମ ଆତିଥେୟତା ଓ ନିରହଂକାର ଦାନ ଆଜି ମଧ୍ୟ ଯେକୌଣସି ବୈଦେଶିକ ସତ୍ୟସଂଧିତ୍ସୁର ଦୃଷ୍ଟି ଆକର୍ଷଣ କରିବ। ଏ ସବୁ ଆତ୍ମପ୍ରସାର ସାଧନାର ଫଳ।

ପ୍ରବାଦ ଅଛି, ସମସ୍ତେ ଜାଣିଥିବେ ଇଂଦ୍ରଦ୍ୟୁମ୍ନ ନୀଳାଚଳଧାମରେ ଅକ୍ଷୟ କୀର୍ତ୍ତି ସଂପାଦନ କରି ବ୍ରହ୍ମାଂକ ପାଖେ ବର ମାଗିଥିଲେ, ''ମୋତେ ବର ଦିଅଂତୁ, ମୋ କୁଳରେ କେହି ରହିବେ ନାଇ। ଏ କୀର୍ତ୍ତି 'ମୋର' ବୋଲି ଅହଂକାର କରିବାକୁ ଯେପରି କେହି ନ ଥିବେ।'' କୁଳରକ୍ଷା କରିବା ଆର୍ଯର କି ଉପାଦେୟ ଓ ପ୍ରିୟ ବସ୍ତୁ, ସମାଜରେ ସେଥିପାଇଁ କି ଆଦର, କି ପ୍ରଯତ୍ନ, ତାହା ସମସ୍ତେ ଅନୁଭବ କରଂତି; ମାତ୍ର ଇଂଦ୍ରଦ୍ୟୁମ୍ନଂକ ଆତ୍ମୋତ୍ସର୍ଗ ମଧ୍ୟ ଆର୍ଯର ଜାତୀୟ ଭାବ ଓ ଜାତୀୟ ସାଧନାର ଫଳ। ଇଂଦ୍ରଦ୍ୟୁମ୍ନ ତ ପୁରାଣ ଓ ପ୍ରବାଦର କଥା। ଏ ଦେଶରେ କେତେ ମଂଦିର, ମଠ, ଦେବାଳୟ, ପୁଷ୍କରିଣୀ ପ୍ରଭୃତି ଚିର କୀର୍ତ୍ତି ସବୁ ରହିଅଛି; କିଂତୁ କୌଣସିଠାରେ କର୍ତ୍ତା ମର୍ମର ପ୍ରସ୍ତରରେ ନିଜର ନାମ ଲେଖିଯିବାର ପ୍ରସ୍ତାବ କରିନାହାଂତି। ଜୀବନର କ୍ରିୟାରେ ଏ ଆତ୍ମୋତ୍ସର୍ଗ କେବଳ ଆର୍ଯପକ୍ଷରେ ସଂଭବ। ଏହା ତାହାର ସାଧନା— ଏହାହିଁ ତାହାର ଜୀବନ।

ଅନେକେ ଆକ୍ଷେପ କରଂତି, ଏ ଦେଶର ଲିଖିତ ଇତିହାସ ନାଇ। ଅବଶ୍ୟ ବର୍ତ୍ତମାନର ଆବଶ୍ୟକତାଦୃଷ୍ଟିରେ ଏହା ଆକ୍ଷେପର କଥା ହୋଇପାରେ; କିଂତୁ ଭାରତୀୟ ଆର୍ଯ ଆତ୍ମପ୍ରସାର ସାଧନାରେ ଆତ୍ମୋତ୍ସର୍ଗର ଯେଉଁ ମହୀୟସୀ ଦୀକ୍ଷା ଲଭିଥିଲା, ସେଥିରେ ସେ ଆଦୌ ତାର ନିଜତ୍ୱ ରଖି ନାଇ। ଏପରି କି ସେ ତାହାକୁ ବାସ୍ତବିକ ନିଜର ସ୍ୱତଂତ୍ର କାର୍ଯ ବୋଲି ଭାବି ନାଇ। ସମସ୍ତ କାର୍ଯକୁ ଅନଂତ ମାନବ-ଜାତିର ତଥା ବିଶ୍ୱତଂତ୍ରର କାର୍ଯ ବୋଲି ବିଚାରି ସେ ମହାଜାତୀୟ ଜୀବନରେ ଆତ୍ମଦାନ କରିଅଛି। ଅନଂତ ବିଶ୍ୱଶକ୍ତି ସଂଗେ ଯେ ନିଜର ପ୍ରଭେଦ ଦେଖି ନାଇ, ତାହା ପକ୍ଷରେ କୌଣସି କୀର୍ତ୍ତି ବା କର୍ମରେ ନିଜର ନାମ ରଖିଯିବାର ଅହଂକାର ସଂଭବ ନୁହେ। ଏହିପରି ଚିରଂତନ ଆତ୍ମପ୍ରସାରର ଅଭ୍ୟାସ କରି, ସେହି ମହାସାଧନାରେ ଆର୍ଯ ଦୈନଂଦିନ କ୍ଷୁଦ୍ର କ୍ରିୟାକଳାପରେ ମଧ୍ୟ ଆତ୍ମୋତ୍ସର୍ଗ କରିବାକୁ ଶିଖିଥିଲା ଓ କାର୍ଯରେ ସମର୍ଥ ହୋଇଥିଲା।

ଲୋକର ଶିକ୍ଷା ଓ ସମାଜର ଗତି ନିୟମିତ କରିବା ପାଇଁ ଇତିହାସ ଆବଶ୍ୟକ। ଇତିହାସରେ ପୂର୍ବ ଲୋକଂକର କ୍ରିୟା, ଗତି ଓ କର୍ମଫଳ ଲକ୍ଷ୍ୟ କରି ମନୁଷ୍ୟକୁ ନିଜର କର୍ତ୍ତବ୍ୟ ସ୍ଥିର କରିବାକୁ ହୁଏ। ଏହିପରି ଇତିହାସରୁ ମନୁଷ୍ୟ ଯେ ଶିକ୍ଷା ପାଏ, ସେଥିରେ ସେ ଭବିଷ୍ୟତ୍ ପାଇଁ ସାବଧାନ ହୁଏ; ମାତ୍ର ଏ ସମସ୍ତ ସାବଧାନତାର ଶିକ୍ଷା ମଧ୍ୟରେ ମାନବର ଅହଂକାର ଓ କର୍ମଫଳରେ ଆସକ୍ତି ସ୍ପଷ୍ଟ ଦେଖାପଡୁଅଛି। ବିଶ୍ୱତଂତ୍ରର ନିୟମରୁ ମାନବ ଯେଉଁ ପ୍ରାକୃତିକ ଶିକ୍ଷା ଲାଭ କରେ, ତାହା ତୁଳନାରେ ଏ ଇତିହାସର ଶିକ୍ଷା କୃତ୍ରିମ। ଏଥିରେ ମୁକ୍ତି ଆଡ଼କୁ ନ ଯାଇ, ମନୁଷ୍ୟ କର୍ମବଂଧ ମଧ୍ୟରେ ଆବଦ୍ଧ ହୋଇ ବିଶ୍ୱତଂତ୍ର ନିୟମରୁ କ୍ରମେ ଅଧିକରୁ ଅଧିକ ବିଚ୍ଛିନ୍ନ ହେବାର ସଂଭାବନା ଅଛି।

ତେଣୁ ଏ କୃତ୍ରିମ ଶିକ୍ଷା ପାଇଁ କ୍ରିୟା-ବିଧାନ କରିବା ଆର୍ଯ୍ୟର ପ୍ରକୃତିଗତ ନୁହେ। ଆର୍ଯ୍ୟ ଜାଣେ, କର୍ମ ଭଗବାନଂକର। ବିଶ୍ୱତଂତ୍ରର ନିତ୍ୟ ନିୟମରେ କର୍ମର ଫଳ ନିଜେ ନିଜେ ଫଳୁଅଛି। ଇତିହାସ; ଅର୍ଥାତ୍ ଲୋକକ୍ରିୟା ବା ଘଟଣାରାଶିର ବିଶ୍ୱତଂତ୍ରରେ ଯାହା ଉପଯୋଗିତା ଅଛି, ତାହା କଦାପି ନଷ୍ଟ ହୋଇ ନ ପାରେ। ଘଟଣା ଓ ଲୋକକ୍ରିୟାର ଫଳ ଓ ପ୍ରଭାବ ବିଶ୍ୱବିଧାନରେ ନିତ୍ୟ ବସ୍ତୁ। ତାହାର ବିନାଶ ଅସଂଭବ। ଇତିହାସ ତେଣୁ ନଷ୍ଟ ହେବାର ବସ୍ତୁ ନୁହେ। କେବଳ ଇତିହାସରେ ଅହଂକାର ଓ ଫଳ ଶିକ୍ଷା ବଂଧର ଲକ୍ଷଣ। ତାହା ଜଗତ୍‌ରେ ଅନାବଶ୍ୟକ।

ବାସ୍ତବିକ ସାଧାରଣ ସ୍ଥୂଳଦୃଷ୍ଟିରେ ଦେଖିଲେ ମଧ୍ୟ, ଗୋଟିଏ ଚିଂତା ବା କାର୍ଯ୍ୟ ପୃଥିବୀରେ ଥରେ ପ୍ରଚାରିତ ହେଲେ, ତାହା ନଷ୍ଟ ହୁଏ ନାଇ। ଆଜି ଯେ ଆଂଭେ ଶିକ୍ଷିତ ଓ ସଭ୍ୟ ହୋଇଅଛୁଁ, ତାହା କେତେ ଯୁଗର ଜାତୀୟ ଚିଂତା ଓ କର୍ମର ଫଳ; କିଂତୁ କାହା ଚିଂତା, କାହା କର୍ମର ଫଳ, ତାହା ଆଂଭେ କହିପାରିବୁ ନାଇ। ଆଜି ଆଂଭେ ଚାଷ କରୁଅଛୁ, ଭାତ ରାଂଧି ଖାଉଅଛୁ, ନିଆଁ ଜାଳୁଅଛୁଁ। ସୃଷ୍ଟିର ପ୍ରଥମ ଦିନ ଆଂଭର ଆଦିମ ପୂର୍ବପୁରୁଷମାନେ ଏସବୁ ହୁଏତ ହଠାତ୍ କିଛି ଜାଣି ନ ଥିବେ। କିଏ ପ୍ରଥମେ ଅଗ୍ନି ଆବିଷ୍କାର କଲା, ଲଂଗଳ ଧଇଲା, ତଂତ ବସାଇଲା, ତାହା ଆଂଭେ ଜାଣୁ ନାଇ; କିଂତୁ ସେସବୁ କର୍ମର ଫଳ ରହିଅଛି। ପ୍ରାକୃତିକ ଜୀବନବିକାଶରେ ସବୁ କର୍ମ କ୍ରମେ ସୃଷ୍ଟିରେ ପ୍ରସାର ଲଭୁଅଛି। ଇତିହାସ ଲେଖା ନ ଥିଲେ ଯେ ଇତିହାସ ନଷ୍ଟ ହୁଏ, ତାହା ନୁହେ; ବରଂ ଲେଖା ଇତିହାସ କେବଳ ମନୁଷ୍ୟର ପୁରୁଷକାର ଦୃଢ଼ କରିବାର ଆଶଂକା ଅଛି। ଅମୁକ ଏପରି କରିଥିଲେ, ଏପରି ଫଳ ହୋଇଛି; ମୁଁ ଏପରି କରିବି ବା କରିବି ନାଇ, ଏହାହିଁ ଇତିହାସ-ଶିକ୍ଷାର ଫଳ। ଏ ପୁରୁଷକାର-ପ୍ରଧାନ ଜୀବନ-ସଂଗ୍ରାମ-ଯୁଗରେ ଅବଶ୍ୟ ଏଭଳି ଇତିହାସ ଶିକ୍ଷା ଏବଂ ତଦନୁଯାୟୀ ସାଧନାର ସ୍ଥାନ ଯଥେଷ୍ଟ ଅଛି; କିଂତୁ ଜୀବନର ପ୍ରାକୃତିକ ବିକାଶରେ ତାହା ସଂଭବ ନୁହେ।

ମନୁଷ୍ୟ ବଢୁଅଛି। ଜୀବନର ପୂର୍ବ ପୂର୍ବ ଅବସ୍ଥାର ଫଳ ପରବର୍ତ୍ତୀ ଅବସ୍ଥାରେ ରହୁଅଛି। ପ୍ରାକୃତିକ ଭୂୟୋଦର୍ଶନ ବା କ୍ରିୟା-ପ୍ରବାହ ଚାଲିଅଛି। ଏ ଏକପ୍ରକାର ପ୍ରାକୃତିକ ସାଧନା; ପୁଣି ମନୁଷ୍ୟ ଉପଦେଶ ପାଉଅଛି। ଉପଦେଶ ଅନୁସାରେ ଫଳାଫଳ ବିଚାର କରି, ସେହି ଉପଦେଶ ମନେରଖି ତଦନୁସାରେ କାର୍ଯ୍ୟ କରୁଅଛି। ସେ ଆଉ ଏକପ୍ରକାର ସାଧନା। ସେ ସାଧନା ପ୍ରାକୃତିକ ନୁହେ; କୃତ୍ରିମ। ସେଥିରେ ମନୁଷ୍ୟ ପୁରୁଷକାର ପ୍ରୟୋଗ କରି, ଜାଣି ବୁଝି, ନିଜ ଜୀବନ ବିକାଶର ପଂଥା ନିଜେ ତିଆରି କରୁଅଛି।

ଜୀବନରେ ଏହି ଦୁଇ ପ୍ରକାର ସାଧନା ପାଇଁ ସ୍ଥାନ ଅଛି ସତ; କିଂତୁ ବିଶ୍ୱତଂତ୍ରର ପ୍ରାକୃତିକ ଅଭିବ୍ୟକ୍ତିରେ ପ୍ରାକୃତିକ ସାଧନାହିଁ ପଂଥା। ବଂଧ-ଜଡ଼ିତ ମାନବ କୃତ୍ରିମ ସାଧନା ଅବଲଂବନ କରିପାରେ; କିଂତୁ ତାହା ପ୍ରାକୃତିକ ସାଧନାର ପଂଥା ଅବଲଂବନ ନ କଲେ, ପ୍ରାକୃତିକ ସାଧନାର ନୀତିରେ ପ୍ରଭାବିତ ନ ହେଲେ, ଆତ୍ମପ୍ରସାର ସୀମାବଦ୍ଧ ହେବ— ବଂଧ ଦୃଢ଼ ହେବ; ମାତ୍ର ଏସବୁ ସତ୍ତ୍ୱେ କୃତ୍ରିମ ସାଧନା ଅନୁସରଣ ନ କରି ମାନବ ରହିପାରିବ ନାହିଁ। ପ୍ରାକୃତିକ ସାଧନାରେ ବିମଳ ବିଶ୍ୱବସ୍ତୁ ମାନବ-ଶିଶୁ ସ୍ୱଭାବତଃ ଯେ କର୍ମ ଆଚରଣ କରିଯାଏ, କୃତ୍ରିମ ସାଧନାରେ ସେହି କର୍ମ ମଧ୍ୟରେ କାରଣ ଜ୍ଞାନ ଓ ଫଳାଫଳ ବିଚାର ପ୍ରବେଶ କରେ ସତ; କିଂତୁ ସେତେବେଳେ ମଧ୍ୟ ସାଧନା ପ୍ରାକୃତିକ ପଂଥା ଛାଡ଼ିବା ଉଚିତ ନୁହେ। ପ୍ରାକୃତିକ ପଂଥା ନ ଛାଡ଼ିଲେ ସାଧନା ପୂର୍ଣ୍ଣ ହୁଏ। ଅଜ୍ଞାତଭାବରେ ବିଶ୍ୱବସ୍ତୁ ପରି ମାନବ ଯେଉଁ କର୍ମରେ ନିରତ ଥାଏ, ଜ୍ଞାନ ସହିତ ତାହାର ଆଲୋଚନା କରି ସେ ବିଶ୍ୱତଂତ୍ର ବୁଝିପାରେ, ଧର୍ମ ଅବଧାରଣ କରିପାରେ। ଆତ୍ମପ୍ରସାରର ଶୁଦ୍ଧ ଅନୁଭୂତିରେ ପୁଲକ ଓ ଆନଂଦ ଅନୁଭବ କରେ; କିଂତୁ କର୍ମର ପଂଥା ଛାଡ଼ିଲେ, କର୍ମ ନିୟମରେ ପ୍ରାକୃତିକ ସାଧନାର ପ୍ରଭାବ ନ ରହିଲେ, ତାହାର ଦୃଷ୍ଟି ସୀମାବଦ୍ଧ ହୁଏ, ଅହଂକାର ଜାଗ୍ରତ ହୁଏ ଏବଂ ସେ ବିଶ୍ୱତଂତ୍ରରୁ ବିଚ୍ଛିନ୍ନ ଓ ଭ୍ରଷ୍ଟ ହୁଏ। ଜ୍ଞାନ ହେୟ ନୁହେ; କିଂତୁ ବଂଧଭାବ ସର୍ବଥା ବର୍ଜନୀୟ।

ଗୋଟିଏ ସାଧାରଣ କଥାର ଉଦାହରଣ ଦିଆଯାଉ। ଶିଶୁ ପ୍ରକୃତିର ସଦ୍ୟ ଶୁଦ୍ଧ ବସ୍ତୁ। ପ୍ରାକୃତିକ ଜୀବନର ଅନାବିଳତା ତାହାଠାରେ ଭ୍ରଷ୍ଟ ବା ବିଚ୍ଳିତ ହୋଇ ନାହିଁ। ତାର ଆତ୍ମପର ନାହିଁ; ଭେଦବୁଦ୍ଧି ନାହିଁ; ତାର ସମସ୍ତ କ୍ରିୟାରେ ଆତ୍ମପ୍ରସାରର ଶୁଦ୍ଧ ଅଭିବ୍ୟକ୍ତି; ଅଗ୍ନି ଜଳରେ ସମଜ୍ଞାନ; ତାର ଅନ୍ନଠାରେ ଯେଉଁ ଜ୍ଞାନ, ମୃତ୍ତିକା ବା ବିଷ୍ଠାରେ ତାହାଠାରୁ ଭିନ୍ନ ଜ୍ଞାନ ନୁହେ। ମନୀଷୀ, ପଂଡିତ, ମହାପୁରୁଷମାନେ ଯେଉଁ ଶୁଦ୍ଧ ଜ୍ଞାନ ଉପଦେଶ ଦିଅଂତି, ଯେଉଁ ଆତ୍ମପ୍ରସାରର ସାଧନା ପ୍ରବର୍ତ୍ତାଇ ଅଛଂତି, ଶିଶୁର ଜ୍ଞାନ, ଶିଶୁର ସାଧନା ଲକ୍ଷ୍ୟ କଲେ ସେଥିରେ ସେହି ଆତ୍ମପ୍ରସାର, ସେହି ବିଶ୍ୱବ୍ୟାପକ ଜ୍ଞାନର ନିଦର୍ଶନ ମିଳେ।

କିଂତୁ ପ୍ରଭେଦ ଅଛି। ଶିଶୁ ଯାହା ଅଜ୍ଞାତଭାବରେ ବିଶ୍ୱଶକ୍ତିର ମୌଳିକ ପ୍ରେରଣାରେ କରୁଅଛି, ମୁକ୍ତ ମାନବ ଆତ୍ମପ୍ରସାରଫଳରେ ବିଶ୍ୱତଂତ୍ରର ସମ୍ୟକ୍ ଜ୍ଞାନବଳରେ ବୁଝି ତାହାହିଁ କରେ। ସଂସାରର ଭୂୟୋଦର୍ଶନରେ ବିଚାର ଓ ଫଳାଫଳ ପରୀକ୍ଷାରେ ହୁଏତ: ପଂଡିତ ଏ ଜ୍ଞାନ ଲାଭ କରିଅଛି; କାରଣ ସହିତ ବୁଝି ସେହି ଜ୍ଞାନ ଅନୁସାରେ କାର୍ଯ୍ୟ କରୁଅଛି। ଶିଶୁର ସେ କାରଣ-ଜ୍ଞାନ ନାଇ।

ସମସ୍ତେ ନିଆଁ ଜାଳଂତି; ନିଆଁ ଲିଭିଗଲେ ଫୁଂକିଦିଅଂତି। ଫୁଂକିଦେଲେ ତାହା ପୁଣି ଜଳିଉଠେ। ଏ ଗୋଟିଏ ସାଧାରଣ କ୍ରିୟା, ପ୍ରାକୃତିକ ପ୍ରଣାଳୀରେ ବରାବର ଚାଲିଆସିଅଛି। ବୈଜ୍ଞାନିକ ଅନୁସଂଧାନ କରି ଜାଣୁଛଂତି, ପବନରେ ଅମ୍ଳଜାନ ବାଷ୍ପ ସଂଗେ କାଠରେ ଥିବା ଅଂଗାରର ରାସାୟନିକ ସଂଯୋଗ ହେଲେ ନିଆଁ ଜଳେ। ସେଥିପାଇଁ ନିଆଁ ଜଳିବା ବଂଦ ହୋଇଗଲେ ବୁଝିବାକୁ ହେବ, କାଠର ଅଂଗାର ଯଥେଷ୍ଟ ଅମ୍ଳଜାନ ପାଉନାଇ। ମନୁଷ୍ୟ ପ୍ରଶ୍ୱାସ-ବାୟୁରେ ବହୁତ ଅମ୍ଳଜାନ ପରିତ୍ୟାଗ କରେ, ପୁଣି ବାହାରର ବାୟୁମଂଡଳରେ ତାହାଠାରୁ ଆହୁରି ବେଶି ବିଶୁଦ୍ଧ ଅମ୍ଳଜାନ ମଧ୍ୟ ରହିଅଛି। ନିଆଁକୁ ଫୁଂକିଦେବା ଦ୍ୱାରା କାଠ ଉପରେ ଗୋଟିଏ ବାୟୁପ୍ରବାହ ଘନ ଘନ ଚଳାଇଦେଲେ, କାଠର ଅଂଗାର ଯଥେଷ୍ଟ ଅମ୍ଳଜାନ ପାଇ ଜଳିଉଠିବ। ଅତଏବ ପ୍ରାକୃତିକ କ୍ରିୟା ଓ ଜ୍ଞାନଲବ୍ଧ କ୍ରିୟା ମଧ୍ୟରେ ବସ୍ତୁତଃ କିଛି ପ୍ରଭେଦ ନାଇ। କେବଳ ପ୍ରଥମଟିରେ କାରଣ ଜ୍ଞାନ ନାଇ, ଦ୍ୱିତୀୟଟି କାରଣ ଜ୍ଞାନ ସହିତ ସେହି କ୍ରିୟାର ଅନୁଷ୍ଠାନ ମାତ୍ର।

ଶିଶୁ ଓ ମୁକ୍ତ ମାନବର କାର୍ଯ୍ୟ ମଧ୍ୟରେ ସେହି ସଂବଂଧ, କ୍ରିୟା ସମାନ ରହିଅଛି। ସାଧନା ବା ସାଧନାର ପଂଥାରେ କୌଣସି ପ୍ରକାର ବ୍ୟତ୍ୟୟ ବା ବ୍ୟତିକ୍ରମ ନାଇ; କିଂତୁ ଭଗବାନ୍ ଶୁଦ୍ଧ ସ୍ୱାଭାବିକ ଶିଶୁକୁ ଯେ ଆତ୍ମପ୍ରସାର ଦାନକରି ପୃଥିବୀକୁ ପଠାଇଅଛଂତି, ଯେ ଆତ୍ମପ୍ରସାରଫଳରେ ସେ ଜୀବନ ଧାରଣ କରିବାକୁ ସମର୍ଥ ହୋଇଅଛି, ଯେ ଆତ୍ମପ୍ରସାର ସାଧନାରେ ସେ ବିଶ୍ୱତଂତ୍ରରେ ନିଜର ନିଜତ୍ୱ ରଖିଅଛି, ମୁକ୍ତପୁରୁଷ ଜ୍ଞାନ ସହିତ ସେହି ଆତ୍ମପ୍ରସାରର ପଂଥା ଅବଲଂବନ କରୁଅଛି। ସେହି ଆତ୍ମପ୍ରସାରରେ ବିଶ୍ୱୈକତ୍ୱ ଅନୁଭବ କରି କର୍ମରେ ଅହଂକାର ଛାଡୁଅଛି।

ଏହାହିଁ ଜଗତ୍‌ରେ ସ୍ୱାଭାବିକ ବିକାଶ-ନିୟମ। ଅବସ୍ଥାରେ ଅଜ୍ଞାତଭାବରେ ଯାହା ହୋଇଯାଏ, ବିକଶିତ ଅବସ୍ଥାରେ ଜ୍ଞାନର ସହିତ ଠିକ୍ ତାହାହିଁ କରିବାକୁ ହୁଏ। ଆଦିମ ବେଦଗାନରେ ଋଷିକଂଠ ଭେଦି ଯେଉଁ ଆତ୍ମପ୍ରସାର ବିଶ୍ୱାତ୍ମାର ଅବବୋଧ ଫୁଟିଅଛି, ବେଦାଂତର ସକାରଣ ସଯୁକ୍ତିକ ବ୍ୟାଖ୍ୟାରେ ତାହାହିଁ ପ୍ରମାଣିତ ଓ ସିଦ୍ଧାଂତ ହୋଇଅଛି। ଇତିହାସର ଶିକ୍ଷା ମଧ୍ୟ ଏହି ନିୟମରେ ଚାଳିତ ହେବା ଉଚିତ। ଅଜ୍ଞାତଭାବରେ ଜଗତ୍‌ର ଘଟଣା ବା କର୍ମ-ପରଂପରା ମାନବକୁ ଯେ ଭାବରେ ପ୍ରଭାବିତ କରଂତି, ଇତିହାସ ତାହାହିଁ ଫେଡ଼ି ଦେଖିବ। କିଂତୁ ବିକାଶର ପଂଥାରେ ଏହି ପ୍ରାକୃତିକ ନିୟମ ଛାଡ଼ି, ଅହଂକାରରେ ଭିନ୍ନ ପଂଥା ଫିଟାଇବାକୁ

ଗଲେ କ୍ରିୟା ଭ୍ରଷ୍ଟ ହେବ; କଳ୍ପନାରେ ବିଶୃଙ୍ଖଳା ଆସିବ; ଅହଂକାରରେ ମାନବର ଧର୍ମ ନାଶ ହେବ।

ଆର୍ଯ୍ୟର ତାହା ହୋଇ ନାଇ। ସେ ଘଟଣାର ସ୍ୱାଭାବିକ ପ୍ରଭାବ ଉପରେ ନିର୍ଭର କରି ଚିରକାଳ ଇତିହାସର କ୍ରିୟା-ପରଂପରା ଦେଖିଅଛି। ଆତ୍ମପ୍ରସାର ଛଡ଼ା ଅନ୍ୟ ସାଧନାରେ ସେ ପ୍ରବୃତ୍ତ ହୋଇ ନାଇ। ଏହି ଆତ୍ମପ୍ରସାରରେ ତାହାର କ୍ରିୟାରାଶି ବିଶ୍ୱବ୍ରହ୍ମାଂଡକୁ ଆପଣାର କରିଅଛି। ସେ ଆତିଥେୟ ହୋଇଅଛି; କିଂତୁ ସେଠାରେ ମଧ୍ୟ କହିଅଛି—

"ରତ୍ନାକରଃ କିଂ କୁରୁତେ ସ୍ୱରତ୍ନୈ- / ର୍ବିଂଧ୍ୟାଚଳଃ କିଂ କରିଭିଃ କରୋତି
ଶ୍ରୀଖଣ୍ଡଖଣ୍ଡୈଃ ମଳୟାଚଳଃ କିଂ / ପରୋପକାରାୟ ସତାଂ ବିଭୂତିଃ।"

ଅର୍ଥାତ୍, ରତ୍ନାକର ନିଜପାଇଁ ରତ୍ନ ରଖି ନାଇ, ବିଂଧ୍ୟାଚଳ ଆପଣାର ବ୍ୟବହାର ପାଇଁ ହାତୀ ପୋଷି ନାଇ, ମଳୟଗିରି ଆପେ ଗ୍ରୀଷ୍ମକାଳରେ ଚଂଦନ ବୋଳିହେବ ବୋଲି ଚଂଦନ ଗଛ ବଢ଼ାଇ ନାଇ। ସାଧୁ ଲୋକମାନଂକର ଯାହା ବିଭବ ଥାଏ ତାହା କେବଳ ପରପାଇଁ।

ଏ ଗୋଟାଏ ଉପମା ହେଲେ ମଧ୍ୟ ଏଥିରେ ବହୁତ କଥା ବୁଝିବାର ଅଛି। ଏ ଆର୍ଯ୍ୟଭୂମିର ଗୋଟିଏ ପ୍ରବଚନ। ପ୍ରବଚନରେ ଯୁଗ-ଯୁଗାଂତରର ପରିପକ୍ୱ ଜ୍ଞାନ ପ୍ରକାଶିତ ହୁଏ। ଆର୍ଯ୍ୟ ଯେ ଆତ୍ମପ୍ରସାରରେ ସମସ୍ତ ବିଶ୍ୱପ୍ରକୃତି ସଂଗେ ଜୀବନ ମିଶାଇ ବିଶ୍ୱମୟ ଘଟଣାରାଶିରୁ ନିଜର କର୍ମଶିକ୍ଷା କରି ଜୀବଂତ ସାଧନାରେ ନିରତ ରହିଅଛି, ଏ ପ୍ରବଚନ ତାହା ସ୍ପଷ୍ଟ ପ୍ରମାଣ କରୁଅଛି।

କର୍ମ ଶିକ୍ଷାପାଇଁ ଆର୍ଯ୍ୟର ଅନଂତ ସୃଷ୍ଟି ଓ ଅନଂତ ଘଟଣାରାଶି ପଡ଼ିରହିଛି। ଆତ୍ମପ୍ରସାରଫଳରେ ସେ ସମସ୍ତ ବସ୍ତୁ ଓ ଘଟଣାରାଶି ସଂଗେ ମାନବ ନିଜର ଆପେକ୍ଷିକ ଉପଯୋଗିତା ତଥା ଏକତ୍ୱ ଅନୁଭବ କରୁଅଛି; ବିଶାଳ ବିଶ୍ୱଦ୍ୱାରା ପ୍ରଭାବିତ ହୋଇ ସେ ଆତ୍ମପ୍ରସାର ବୁଝିଅଛି। ସେଥିପାଇଁ ସୃଷ୍ଟିର ସବୁଠାରେ ସେ ନିଜ କାର୍ଯ୍ୟର ପ୍ରତିବିଂବ ଦେଖୁଅଛି। ସମସ୍ତେ ଯେପରି କି ତାକୁ କର୍ମଶିକ୍ଷା ଦେଉଅଛଂତି। ସେ ସମସ୍ତଂକ ସଂଗେ ଏକ ହୋଇ ନିଜର ନିର୍ଦ୍ଦିଷ୍ଟ କର୍ମ-ପରଂପରା ଅବଲଂବନ କରୁଅଛି। ତେଣୁ ସମସ୍ତ କର୍ମସାଧନାରେ ତାହାର ଆତ୍ମପ୍ରସାରହିଁ ପ୍ରକଟିତ ହେଉଅଛି ଏବଂ ସେ ଆତ୍ମପ୍ରସାରରେ ପ୍ରତିଷ୍ଠିତ ରହି ସେ ବିଶାଳ ବିଶ୍ୱକୁ ନିଜର ବିଚାରୁଅଛି ଓ ଆପଣାକୁ ବିଶାଳ ବିଶ୍ୱ ସଂଗେ ଏକ ମନେକରୁଅଛି। ସ୍ଥିତିଲୀଳାର ବିଚିତ୍ରତା ତାହା ପକ୍ଷରେ ଅଦ୍ଭୁତ ନୁହେ। ଆତ୍ମପ୍ରସାରର ସାଧନାଫଳରେ ସ୍ଥିତିଲୀଳାର ବିସ୍ମୟ ତାକୁ ମୋହଯୁକ୍ତ କରୁନାଇ। ସେ ବିସ୍ମୟରେ ଆର୍ଯ୍ୟ ବରଂ ଆନନ୍ଦ ପାଉଅଛି ଏବଂ ବିଚିତ୍ର ନିସର୍ଗ ଲୀଳା ମଧ୍ୟରେ ପୂର୍ଣ୍ଣ, ଅଖଂଡ ଓ ମୁକ୍ତ ଆତ୍ମବୋଧ ସିଦ୍ଧ କରି ସେ କୃତାର୍ଥ ହେଉଅଛି।

□□□•

## ଷଷ୍ଠ ଅଧ୍ୟାୟ

## ଆର୍ଯ୍ୟ-ଜୀବନର ଆଦର୍ଶ – 'ସୋଽହଂ'

ଆର୍ଯ୍ୟ-ଜୀବନରେ ଆତ୍ମପ୍ରସାରହିଁ ସାଧନାର ପରମ ଲକ୍ଷଣ। ସମସ୍ତ କ୍ରିୟା-ପରଂପରା ମଧ୍ୟରେ ଆର୍ଯ୍ୟ ବିଶ୍ୱୈକତ୍ୱ ଅନୁଭବ କରେ; କିଂତୁ ଏ ବିଶ୍ୱୈକତ୍ୱ କଣ, ଅର୍ଥାତ୍ ଆର୍ଯ୍ୟ ସାଧନାର ଆଦର୍ଶ କଣ, ଏ କଥା ବୁଝିବା ଦରକାର।

ସାଧନାର ପଂଥା, ଆଦର୍ଶର ଲକ୍ଷ୍ୟ ଜଗତ୍‌ରେ କିଛି ନୂଆ କଥା ନୁହେଁ। ସମସ୍ତ କର୍ମହିଁ ଏକ ଏକ ସାଧନାର ଅଂଗ; ପୁଣି ଜଗତ୍‌ରେ କୌଣସି କର୍ମ ନିରୁଦ୍ଦେଶ୍ୟ ବା ଆଦର୍ଶହୀନ ନୁହେ। ଆଦର୍ଶ ବିନା ଜୀବନ ଅସଂଭବ। ଜଗତ୍‌ରେ ପ୍ରତ୍ୟେକ କର୍ମରେ ଲକ୍ଷ୍ୟ ଅନୁସରଣ କରଂତି। କାହାର ଲକ୍ଷ୍ୟ ଧନ, କାହାର ଧର୍ମ, କାହାର ଭୋଗ, କାହାର ତ୍ୟାଗ, କାହାର ଖ୍ୟାତି, କାହାର ପ୍ରୀତି, କାହାର ପୌରୁଷ, କାହାର ବିଶ୍ୱାସ– ଏହିପରି ପ୍ରତ୍ୟେକ ବ୍ୟକ୍ତିତ୍ୱବାନ୍ ଜୀବଂତ ବସ୍ତୁର ଆଦର୍ଶ ଅଛି ଓ ନିଜ ନିଜ ଲକ୍ଷ୍ୟକୁ ଯିବା ପାଇଁ, ଆଦର୍ଶ ପାଇବା ପାଇଁ ସମସ୍ତେ ନ୍ୟୂନାଧିକ ସାଧନା କରୁଅଛଂତି। ଏ ଲକ୍ଷ୍ୟ ସ୍ଥିରକରିବାରେ, ଏ ସାଧନା ଅବଲଂବନ କରିବାରେ କାହାର ଗତି ପ୍ରକୃତିମାର୍ଗରେ ଆପେ ଆପେ ଫୁଟିଉଠେ, କିଏ ବା ଅନ୍ୟଠାରୁ ଦେଖି ଶିଖେ ବା ଧାରଣା କରିବାକୁ ଚେଷ୍ଟାକରେ। ଅମୁକ ଏପରି ଲକ୍ଷ୍ୟରେ ଏପରି ବାଟ ଧରି ଏପରି ହୋଇଅଛଂତି, ଆଂଭେ ସେହିପରି କରିବା, ଏ ହେଲା ଏକ ସାଧନା। ଆଧୁନିକ ଯୁଗର ଉଦ୍ଧତ ପୁରୁଷକାରମୟ ସଭ୍ୟତାରେ ଏହି ସାଧନାହିଁ ସର୍ବତ୍ର ଦେଖାଯାଏ। ଖ୍ରୀଷ୍ଟ ସଭ୍ୟତା ଓ ବୌଦ୍ଧ ସଭ୍ୟତା ଦିନେ ଏହି ରୀତିରେ ପୃଥିବୀରେ ବ୍ୟାପ୍ତ ହୋଇଥିଲା। ଆଜି ଇଉରୋପର ସଭ୍ୟତା ଏହି ରୀତିରେ ପ୍ରାଚ୍ୟ ଭୂଖଂଡ ପ୍ଲାବିତ କରିବାକୁ ବସିଅଛି। ମନେକଲୁଁ, ଇଉରୋପ କାରଖାନା କରି ବଡ଼ ହୋଇଅଛି। ସେଥିପାଇଁ ଆଂଭେ କାରଖାନା ବସାଇ ପଲ୍ଲିଶିଳ୍ପ ପୋଷଣ କରିବା ନୀତିରେ ଯୋଗ ଦେଉଁ; ଚତୁଷ୍ପାଠୀ ଉଠାଇ ସ୍କୁଲ ବସାଉଁ; ରାଜଦରବାରରେ ରାଜାଂକ ସଂଗେ ଅଧିକାର ଛଡ଼ାଛଡ଼ି ଲଗାଉଁ– ଇତ୍ୟାଦି। ଏ ସବୁ ଆଂଭେ ଭାବିଚିଂତି ନିଜ ଜୀବନର ଆଦର୍ଶରେ ଆହରଣ କରି କରୁନାହୁଁ– ବାଧ୍ୟ ହୋଇ କରୁଅଛୁ। ଏହା ଆଂଭର ଆର୍ଯ୍ୟଜୀବନ ବିକାଶର ଅଂଗ ହେଉନାହିଁ; ଜୀବନ ଧ୍ୱଂସ କରି ନୂତନ ସୃଷ୍ଟି କରୁଅଛି। ଏ ସବୁର ଫଳ ଦିନେ ଫଳିପାରେ; କିଂତୁ ଏହା ପ୍ରାକୃତିକ ନୁହେ, କୃତ୍ରିମ। ସମାଜ ଉପରୁ ତଳକୁ ଭେଦ କରି

ଜନସାଧାରଣଂକୁ ପ୍ରଭାବିତ କରିବାରେ ଏହା ବହୁକାଳ ଗ୍ରହଣ କରିବ। ଶେଷରେ ଆର୍ଯ୍ୟଜୀବନର ଅଂଶ ନ ହୋଇ ହୁଏତ ଆର୍ଯ୍ୟ-ପରଂପରା ନଷ୍ଟ କରିବ।

ମାତ୍ର ଆର୍ଯ୍ୟଭୂମିରେ ଜୀବନ ବିକାଶ ସ୍ୱାଭାବିକ। ଏପର୍ଯ୍ୟଂତ ଯେଉଁ ସାଧନାର କଥା କୁହାଗଲା, ତାହା ଯେ କିପରି ବା କାହିଁକି ସ୍ୱାଭାବିକ, ତାହା ଆଂଭେମାନେ ଭଲକରି ବୁଝିନାହୁଁ। ଆର୍ଯ୍ୟର ସମସ୍ତ ସାଧନା ଗୋଟିଏ ସ୍ଥିର ଆଦର୍ଶ ଆଡ଼କୁ ଯିବାର ଉଦ୍ୟମ ମାତ୍ର। ଶ୍ରୁତି, ଆପ୍ତବଚନ ଓ ଶାସ୍ତ୍ରମୁଖରେ ଆଭଂମାନଂକୁ ଏହା ଶିଖିବାକୁ ହୁଏ; ପୁଣି ସେହି ଶିକ୍ଷାନୁସାରେ କ୍ରିୟା-ବିଧାନ କରିବାକୁ ହୁଏ। ଏତିକିରେ ହଠାତ୍ ଆଦର୍ଶ ବା ସାଧନାର ପ୍ରାକୃତିକତା ପ୍ରତିପାଦିତ ହେଉନାଇ।

ପ୍ରାକୃତିକ ସାଧନା ପ୍ରକୃତିରେ ଫୁଟିଉଠିବାର କଥା। ପ୍ରାକୃତିକ ଆଦର୍ଶର ମଧ୍ୟ ସ୍ୱାତଂତ୍ର୍ୟ ଅଛି। ପ୍ରାକୃତିକ ବ୍ୟକ୍ତିତ୍ୱ ବିକାଶର ପ୍ରଣାଳୀହିଁ ପ୍ରାକୃତିକ ସାଧନା। ପୁଣି ସେହି ପ୍ରଣାଳୀରେ ଜୀବନର ଯେ ଲକ୍ଷ୍ୟ ସ୍ୱତଃ ପ୍ରତିଭାତ ହୁଏ, ତାହାହିଁ ପ୍ରାକୃତିକ ଜୀବନର ବ୍ୟକ୍ତିତ୍ୱ ବା ଆଦର୍ଶ। ଏଥିରେ ବ୍ୟକ୍ତି ହେୟ ବର୍ଜନ ଓ ଉପାଦେୟ ଆହରଣ କରି ସ୍ଥିର ଲକ୍ଷ୍ୟ ଆଡ଼କୁ ଯାଏ ସତ; କିଂତୁ ସେ ଆଦାନ ବର୍ଜନରେ କୌଣସି ବାଧ୍ୟତା ନ ଥାଏ। ସେ ଲକ୍ଷ୍ୟରେ କେବଳ ପରାନୁସରଣ ନ ଥାଏ। ଆର୍ଯ୍ୟର ତାହାହିଁ ହୋଇଅଛି। ସାଧନାର ବିଚାର କଲାବେଳେ କେବଳ ଆତ୍ମପ୍ରସାର ଓ କର୍ମ-ପରଂପରାର କଥା ବିଶେଷ କୁହାଯାଇଥିଲା। ସେଥିରେ ବ୍ୟକ୍ତିତ୍ୱ ବିକାଶ ଓ ଆଦର୍ଶ ସ୍ଫୁରଣର ବ୍ୟାଖ୍ୟା ବିଶେଷ ଦିଆଯାଇନାଇ; ତାହାର କାରଣ ଅଛି।

ବ୍ୟକ୍ତିପରି ସମାଜ ଓ ଜାତି ମଧ୍ୟ ଶୈଶବ, ବାଲ୍ୟ, ଯୌବନାଦି ଅବସ୍ଥା ଭୋଗ କରେ। ଜାତିର କର୍ମୋନ୍ନତିରେ ଯେତେବେଳେ ତାର ଆଦର୍ଶ ପୂର୍ଣ ବିକାଶ ପାଏ, ସେତେବେଳେ ତାହା ଏକପ୍ରକାର ସ୍ଥିର ହୁଏ। ବ୍ୟକ୍ତି-ଜୀବନରେ ମଧ୍ୟ ଠିକ୍ ସେହି କଥା। ଯୌବନର ପୂର୍ଣତାରେ ଯେତେବେଳେ ବିଷୟବୋଧ ଜନ୍ମେ, ମତାମତ ସ୍ଥିର ହୁଏ, ବ୍ୟକ୍ତିର ବିକାଶ ସେତେବେଳେ ଏକପ୍ରକାର ସୀମାବଦ୍ଧ ହୁଏ। ତା'ପରେ ଯେ ଶିକ୍ଷା ଓ ସାଧନା ଆଦାନ ଓ ଆହରଣ ନ ହୁଏ, ତା ନୁହେ; କିଂତୁ ସେ ସବୁ କେବଳ ସେହି ସ୍ଥିର ବ୍ୟକ୍ତିତ୍ୱର ଦୃଢ଼ତା ଓ କ୍ରିୟାର ପ୍ରସାର ନିଂମତେ। ଆଦର୍ଶ ଯେତେବେଳେ ସ୍ଥିର ହୋଇଅଛି, ତେଣିକି କେବଳ ଆଦର୍ଶରେ ଜୀବନ ମିଶାଇବାର ଚେଷ୍ଟା; ଆହରଣକୁ ଜୀବନର ଅଂଗୀଭୂତ କରିବାର ଉଦ୍ୟମ; କର୍ମ-ପରଂପରା ମଧ୍ୟରେ ବ୍ୟକ୍ତିତ୍ୱ ସ୍ଥିର, ଦୃଢ଼ ଓ ସ୍ପଷ୍ଟ କରିବାର ପ୍ରଯତ୍ନ।

ଜାତୀୟ ଜୀବନର ଗତି ଠିକ୍ ସେହିପରି। ଆଦିମ ଅବସ୍ଥାରେ ଜାତି ପ୍ରକୃତିର କ୍ରୀଡ଼ନକ। ସେ ଅବସ୍ଥାରୁ ପ୍ରାକୃତିକ ଭୂୟୋଦର୍ଶନ ବଳରେ କ୍ରମେ କ୍ରମେ ସେ ବଢ଼େ; ଶୁଦ୍ଧ, ସରଳ ଜୀବନର ଆଦର୍ଶ ବିଶ୍ଳେଷଣରେ ବ୍ୟାଖ୍ୟା କରେ ଓ ସମଷ୍ଟି କର୍ମର ଆହରଣ ମଧ୍ୟରେ ଶୈଶବର ଶୁଦ୍ଧ, ସରଳ ଆଦର୍ଶକୁ ପୁଷ୍ଟ ଓ ପ୍ରମାଣିତ କରେ। ଏହିପରି ଆଦର୍ଶ କ୍ରମେ ପରିଣତ ହୋଇ କିଛି ଦିନ ପରେ ସ୍ଥିର ହୁଏ।

ତେଣିକି ସେହି ଆଦର୍ଶ ଦୃଢ଼ କରିବାର କାଳ। ଏଣେ କ୍ରମେ ଜାତିର ଲୋକସଂଖ୍ୟା ଓ ଅଧିବାସ ସ୍ଥାନ ପ୍ରସାର ଲଭେ। ସେଥିପାଇଁ ଆଦର୍ଶର ଦୃଢ଼ତା ସଂପାଦନ କରି ଧରିରଖିବା ନିମଂତେ ଶିକ୍ଷା ଓ ପ୍ରଯତ୍ନର ପ୍ରୟୋଜନ ଏବଂ ସେହି କାରଣରୁ ପରବର୍ତ୍ତୀ କାଳରେ ଆର୍ଯ୍ୟ-ସାହିତ୍ୟରେ ସାଧନାର ପଂଥା ସୁସ୍ପଷ୍ଟ ଉପଦେଶରେ କୁହାଯାଇଅଛି, ବ୍ୟାଖ୍ୟା କରି ବୁଝାଇବାର ଚେଷ୍ଟା କରାଯାଇଅଛି ଏବଂ ସେହି ସାଧନ ଓ ଆତ୍ମପ୍ରସାର ଆର୍ଯ୍ୟଜାତିର ପ୍ରାକୃତିକ ବର୍ଦ୍ଧନର ଫଳ ବୋଲି ଧରିନିଆଯାଇଅଛି।

ପୁଣି ବ୍ୟକ୍ତିଗତ ଜୀବନର ମୌଳିକତା ଓ ସୁବିଧାନୁସାରେ ଆଦର୍ଶର ସଜ୍ଞାନ ଓ ସ୍ପଷ୍ଟ ବିକାଶ କେତେବେଳେ ଶୀଘ୍ର ହୁଏ, କେବେ ବା ବିଳଂବରେ ହୁଏ, କେବେ ବା ମୃଢ଼ତା ବା ବିଶୃଙ୍ଖଳାରେ ବ୍ୟକ୍ତିତ୍ୱ ଭ୍ରଷ୍ଟ ହେଲେ ଆଦର୍ଶର ସେ ବିକାଶ ଆଦୌ ନ ହେବାର ମଧ୍ୟ ଦେଖାଯାଏ। ପୁଣି କୌଣସି କୌଣସି ଠାରେ ମନୀଷୀ ଓ ପ୍ରତିଭାଶାଳୀ ବ୍ୟକ୍ତିମାନେ ନିଜେ ନିଜର ବ୍ୟକ୍ତିତ୍ୱରେ ପ୍ରତିଷ୍ଠିତ ହୁଅଂତି। କେହି କେହି ଶିକ୍ଷାଫଳରେ ବ୍ୟକ୍ତିତ୍ୱର ଆଦର୍ଶ ସ୍ଥିର କରଂତି। କେହି କେହି ବା ଦାସ ପରି ପରର ଆଦର୍ଶ ଅନୁସରଣ କରଂତି। ଜାତୀୟ ଜୀବନରେ ମଧ୍ୟ ସେହି କଥା। ମୌଳିକ ଶକ୍ତିସଂପନ୍ନ ଜାତିରେ ଜାତୀୟ ବ୍ୟକ୍ତିତ୍ୱ ଅଳ୍ପ ଦିନରେ ସ୍ପଷ୍ଟ ପ୍ରକଟିତ ହୁଏ। ଇଉରୋପ ଯେପରି ଖ୍ରୀଷ୍ଟ ଧର୍ମ ପ୍ରଭୃତିରୁ ଆଦର୍ଶ ଗ୍ରହଣ କରିଅଛି, ସେପରି କେହି କେହି ଶିକ୍ଷାର ସାଧନାରେ ପ୍ରତିଷ୍ଠିତ ହୁଅଂତି। ପୁଣି ଫିଜିବାସୀ, ଅଷ୍ଟ୍ରେଲୀୟ, ହଟେଂଟୋ, ଜୁଆଂଗ ପରି ଜାତିମାନଂକ ପରି କାହାରି ବ୍ୟକ୍ତିତ୍ୱ ଏପର୍ଯ୍ୟଂତ ବିକାଶ ପାଇ ନ ଥିବାର ଦେଖାଯାଏ।

ଆର୍ଯ୍ୟର ଜାତୀୟତା ସନାତନ, ପୁଣି ବହୁକାଳରୁ ଏହା ସୁପ୍ରତିଷ୍ଠିତ। ଏହା ବରାବର ମୌଳିକ ଭାବରେ ପ୍ରାକୃତିକ ବିକାଶ ଲଭିଅଛି। ପରବର୍ତ୍ତୀ କାଳରେ ଆର୍ଯ୍ୟ ଭିନ୍ନ ଆଦର୍ଶର ସଂସର୍ଗରେ ଆସିଅଛି, ଆହରଣରେ ବେଳେବେଳେ ବ୍ୟକ୍ତିତ୍ୱ ମଧ୍ୟ ପରିପୁଷ୍ଟ କରିଅଛି; କିଂତୁ ଏହା ଏପର୍ଯ୍ୟଂତ ମୌଳିକତା ହରାଇନାଇ। ତେବେ ଏହା କି ମୌଳିକ ବିକାଶରେ କି ପ୍ରାକୃତିକ ସାଧନାର ପଂଥା ଧରି କିପରି ଆଦର୍ଶର ବିକାଶ ସାଧନ କରି ସେହି ଆଦର୍ଶକୁ ଧରିରଖିଅଛି, ତାହା ଏଠାରେ ଦେଖିବା ଉଚିତ। ଅବଶ୍ୟ ଏଠାରେ ସାଧନାର ଅର୍ଥ ଟିକିଏ ଭିନ୍ନ କରି ବୁଝିବାକୁ ହେବ। ଏହା ବରାବର କୌଣସି ଆଦର୍ଶ ଧରିରଖିବାର ଉଦ୍ୟମ ବା ପ୍ରଯତ୍ନ ନୁହେ; ତାହା ବରଂ ପରବର୍ତ୍ତୀ ଯୁଗର କ୍ରିୟା। ପ୍ରଥମରୁ ସାଧନା କେବଳ ବିକାଶର ପ୍ରଣାଳୀ। ଏହା ଜାତି ଭିତରେ ନିଜେ ନିଜେ ସ୍ୱତଃ ବଢ଼ିଥିଲା।

ବରାବର କୁହାଯାଉଅଛି, ବ୍ୟକ୍ତି-ଜୀବନର ବିକାଶ ଓ ଜାତି-ଜୀବନର ବିକାଶ ଏକ ପଂଥାରେ ହୁଏ। ତେଣୁ ଏଠାରେ ଆର୍ଯ୍ୟଜୀବନର ସ୍ୱଭାବ ବିକାଶ ଦେଖିବାକୁ ହେଲେ, ଗୋଟିଏ ବ୍ୟକ୍ତିଜୀବନର ମୌଳିକ ଶୁଦ୍ଧ ସରଳ ବିକାଶର ଉଦାହରଣରେ କଥାଟି ଆରଂଭ କରିବା ସୁବିଧାଜନକ।

ଗୋଟିଏ ପ୍ରାକୃତିକ ମାନବ ଶିଶୁ କଳ୍ପନା କରାଯାଉ। ପରମପିତାଂକ ବିଶ୍ୱରାଜ୍ୟରେ ଶିଶୁଟି ଅବତୀର୍ଣ ହେଲା। ତାହାର ଜୀବନର କ୍ରମବିକାଶ ହେବ; ମାତ୍ର ସେ ବିକାଶ ଯଦି ବରାବର ସ୍ୱାଭାବିକ ହୁଏ, ତେବେ ସେ କି ପଂଥା ଅବଲଂବନ କରିବ? ଭୂମିଷ୍ଠ ହେଲାବେଳେ ସେ ନିରାଶ୍ରୟ ଏବଂ ସମସ୍ତ ପ୍ରକୃତିରୁ ଯେପରି କି ବିଚ୍ଛିନ୍ନ। ପୃଥିବୀ, ବାୟୁ ପ୍ରଭୃତି ଠାରୁ ସେ ଭିନ୍ନ। ସେମାନଂକ ସଂଗେ ତାର ଦ୍ୱୈତ ଭାବ। ସେ ଗୋଟିଏ ସ୍ୱତଂତ୍ର ପ୍ରାଣୀ; ତେଣୁ ସେହି ସ୍ୱାତଂତ୍ର୍ୟରେ, ସେହି ଦ୍ୱୈତ ଭାବରେ ସେ ଯେପରି କି ପୃଥିବୀରେ ପଦାଘାତ କଲା। ପୃଥିବୀ ତାହା ସହିଲା। କିଂତୁ ସେତିକି ନୁହେ, ସଂଗେ ସଂଗେ ଶିଶୁର ପାଦରେ ଟିକିଏ ପ୍ରତିଘାତ କରି ଯେପରି କି ଶିଶୁକୁ ଜଣାଇ ଦେଲା, "ଏହିପରି ସାମାନ୍ୟ ସାମାନ୍ୟ ଆଘାତ କଲେ ମୁଁ ତୋର ଶରୀର ଅବୟବାଦି ସବଳ ଓ କର୍ମକ୍ଷମ କରିବି।" ସୂର୍ଯ୍ୟକୁ ଦେଖି ଶିଶୁ ଆଖି ଫିଟାଇଦେଲା। ସୂର୍ଯ୍ୟ ସଂଗେ ସଂଗେ ତାର ଚକ୍ଷୁରେ ପ୍ରତିଘାତ କରି ଯେପରି କି ଜଣାଇ ଦେଲା, "ଆଖି ହଠାତ୍ ଏତେ ମେଲାଇବାକୁ ହେବ ନାଇ। ଆସ୍ତେ ଆସ୍ତେ ଅଭ୍ୟାସ କରି ଆଖିକୁ ରଶ୍ମି ସହିବାକୁ ସକ୍ଷମ କରିନେବାକୁ ହେବ; ତାହାହେଲେ ଆଖି ଭବିଷ୍ୟତ୍‌ରେ କାମରେ ଲାଗିପାରିବ।" ଶିଶୁ ଦୀପଶିଖା ଦେଖି ଧରିବାକୁ ହାତ ବଢ଼ାଇଦେଲା; ଦୀପ ଯେପରି କି କହିଦେଲା, "ଧରିବା ମୋହର ବ୍ୟବହାର ନୁହେ। ମୋ ସଂଗେ ଅନ୍ୟ ପ୍ରକାର ସଂବଂଧ ସ୍ଥାପନ କରିବାକୁ ହେବ।" ଏହିପରି ବିଶ୍ୱପିତାଂକ ରାଜ୍ୟର ଅନଂତ ଶକ୍ତିସମୂହ ମଧ୍ୟରେ ଶିଶୁ ଏକାକୀ ରହି ନିଜର ଅଭାବ ଓ ଆକାଂକ୍ଷାରାଶି ଘେନି ଜୀବନବିକାଶରେ ଅଗ୍ରସର ହେଲା। ଯେତେବେଳେ ଶିଶୁ ନିତାଂତ ଭ୍ରମରେ ପଡ଼ିଲା, ସେତେବେଳେ ତାକୁ ଜଗିବା ପାଇଁ ବିଧାତା ପିତାମାତାଦିଂକ ହୃଦୟରେ ସ୍ନେହର ସଂଚାର କରାଇ ରଖିଥିଲେ, ସେଥିରୁ ମଧ୍ୟ ତାର ଜୀବନ ବିକାଶ ସାହାଯ୍ୟ ପାଇଲା। ଶିଶୁ କଣ ଦେଖିଲା? ସେ ଯେଉଁ ଶକ୍ତିର ସଂପର୍କରେ ଆସିଲା, ତାହାକୁ ଦ୍ୱୈତ-ବୋଧରେ ଶତ୍ରୁପରି ଆକ୍ରମଣ କଲା; କିଂତୁ ଫଳରେ ଦେଖିଲା, କେହି ତାହାର ଶତ୍ରୁ ନୁହଂତି। ଅନଂତ ବିଶ୍ୱଶକ୍ତି କାହାର ନିଗୂଢ଼ ଆଦେଶ ଘେନି ଯେପରି କି ତାର ମିତ୍ରତାହିଁ କରୁଅଛଂତି। ସମସ୍ତେ ତାହାର ଜୀବନବିକାଶରେ ସାହାଯ୍ୟ କରୁଅଛଂତି। ସମସ୍ତେ ଜୀବନରେ ତାର ଆକାଂକ୍ଷା ଓ ଆବଶ୍ୟକତା ପୂର୍ଣ କରିବାକୁ, ତାହାର ବ୍ୟବହାରରେ ଲାଗିବାକୁ, ଯେପରି କି ପ୍ରତି ମୁହୂର୍ତ୍ତରେ କାହାର ଇଂଗିତ ଘେନି ଚାହିଁବସିଅଛଂତି। ସେ ଦେଖିଲା, ସର୍ବତ୍ର ପ୍ରତି ବସ୍ତୁରେ ଗୋଟିଏ ଗୋଟିଏ ଶକ୍ତିର ବିକାଶ ହେଉଅଛି। ତାହାର ନିଜ ଭିତରେ ଯେପରି କି ଗୋଟିଏ ଶକ୍ତି ଅଛି ଏବଂ ସେହି ଶକ୍ତି ବଳରେ ସେ ପୃଥିବୀରେ ଆଘାତ କରୁଅଛି। ପୃଥିବୀରେ ସେହିପରି କୌଣସି ଗୂଢ଼ ଶକ୍ତି ତାକୁ ଆଘାତରେ

ପ୍ରତିଘାତ ଦେଉଅଛି। ଏହିପରି ଗୋଟିଏ ଗୋଟିଏ ଶକ୍ତି ଅନୁଭବ କରି, ସେ ଯେତେବେଳେ ଦେଖିଲା, ଏ ସମସ୍ତ ଶକ୍ତି ଏକ ଲକ୍ଷ୍ୟରେ ଚାଲିଅଛନ୍ତି, ସମସ୍ତେ ମିଶି କେବଳ ତାର ବ୍ୟକ୍ତିତ୍ୱ ବିକାଶ କରୁଅଛନ୍ତି, ସେତେବେଳେ ସେ ବହିର୍ଜଗତର ଅଂତରାଳରେ ଏକ ମହାଶକ୍ତିର ସତ୍ତା ସ୍ୱତଃ ଅନୁଭବ କଲା ଏବଂ ପ୍ରତ୍ୟେକ ଶକ୍ତିରେ ସେହି ମହାଶକ୍ତିର ସ୍ଫୁରଣହିଁ ଦେଖିଲା। ସେ ଅନୁଭବ କଲା, ବହିର୍ଜଗତରେ ସର୍ବତ୍ର ମହାଶକ୍ତିର ବିକାଶ। ଭୂମି, ଜଳ, ବାୟୁ, ଗଛ, ପତ୍ର, ନଦୀ, ପର୍ବତଠାରୁ ରବି, ଚନ୍ଦ୍ର, ଗ୍ରହ, ତାରା ପର୍ଯ୍ୟଂତ ଅନଂତ ମୁଖରେ ଏକ ବିଶ୍ୱଶକ୍ତି ତାହାର ବ୍ୟକ୍ତିତ୍ୱ ପୋଷଣ କରୁଅଛନ୍ତି। ସେ ଦେଖିଲା, ପୃଥିବୀ ସୂର୍ଯ୍ୟ ଅଗ୍ନିଠାରୁ ପିତାମାତା ସ୍ୱଜନ ପର୍ଯ୍ୟଂତ ସମସ୍ତେ ତାହା ପ୍ରତି ସେହି ମଂଗଳମୟ ବିଶ୍ୱଶକ୍ତିର ଏକ ଏକ ଅବତାର। ସମସ୍ତେ ଯେପରି କି ଏକ ଭାବରେ ପ୍ରଣୋଦିତ ହୋଇ ତାହାର ବ୍ୟକ୍ତିତ୍ୱ-ବିକାଶରେ ଲାଗିଅଛଂତି।

ଶିଶୁ କେବଳ ସେତିକି ଦେଖିଲା ନାଇ। ବଢ଼ିବା ସଂଗେ ସଂଗେ ସେ ବୁଝିଲା, ଜଗତ୍‌ରେ ସ୍ୱାର୍ଥପର ହୋଇ ଅବତୀର୍ଣ ହେଲି; ପ୍ରଥମେ ଯାହାକୁ ଦେଖିଲି, ତାକୁ ଶତ୍ରୁଭାବରେ ଆକ୍ରମଣ କଲି; କିଂତୁ ଜଗତ୍‌ରେ ଶକ୍ତିସବୁ ମୋର ସେ ଶତ୍ରୁତାରେ ପ୍ରତିଶତ୍ରୁତା କଲେନାଇ। ସେମାନେ ମୋ କାନରେ ଯେପରି କି ମୋର ପ୍ରକୃତ ସ୍ୱାର୍ଥ, ମୋର ପରମ ମଂଗଳର ବାର୍ତା କହିଦେଲେ। ଜଗତ୍‌ରେ ଶତ୍ରୁତା କାହିଁ? ଅନଂତ ମଂଗଳମୟ ବେଷ୍ଟନୀ ମଧ୍ୟରେ ସଂକୀର୍ଣ ସ୍ୱାର୍ଥର ସ୍ଥାନ ନାଇ। ଏ ମଂଗଳମୟ ଶକ୍ତି ସମକ୍ଷରେ ମୋତେ ଆତ୍ମବିକ୍ରୟ କରିବାକୁ ହେବ; କରିବା ମୋର ଉଚିତ। ତା ନ ହେଲେ ମୋ ଜୀବନର ଅର୍ଥ ନାଇ।

କେବଳ ସେତିକି ନୁହେ, କ୍ରମେ ବୟସ ଓ ବୋଧଶକ୍ତିର ପରିପାକ ସଂଗେ ସେ ଅନୁଭବ କଲା— ଯେଉଁ ପୃଥିବୀରେ ସେ ପ୍ରଥମେ ପଦାଘାତ କରିଥିଲା, କ୍ରମେ ସେହି ପଦାଘାତ କରୁ କରୁ ସେହି ପୃଥିବୀ ତାହାର ପାଦ ଦିଓଟିକୁ ଦୃଢ଼ ଓ କର୍ମକ୍ଷମ କରିଦେଲା। ସେହି ସୂର୍ଯ୍ୟ ଚକ୍ଷୁକୁ ବ୍ୟବହାର ଉପଯୋଗୀ କଲା ଏବଂ ସମସ୍ତ ଅଂଗ-ପ୍ରତ୍ୟଂଗ ଓ ଅସ୍ଥି, ଶିରା, ସ୍ନାୟୁ ଓ ଇଂଦ୍ରିୟମାନଂକୁ ପ୍ରକୃତିର ଶକ୍ତିମାନେ ମିଶି ତିଆରିକଲେ। ମାତାର ସ୍ନେହଠାରୁ ନଦୀ ପର୍ବତ ପ୍ରଭୃତିର ଶୋଭା, ଏପରି କି ରୋଗ ଶୋକ ପର୍ଯ୍ୟଂତ ସମସ୍ତେ ମିଶି ତାର ହୃଦୟରେ ଭାବ ଜାତ କଲେ। ଜଗତ୍‌ର ଚିତ୍ର-ବୈଷମ୍ୟ ତାହାର ବୁଦ୍ଧିର ବିକାଶ କଲା। ସେ ଜାଣେ ନାଇ, କାହିଁକି, କିପରି! ନକ୍ଷତ୍ର-ଗୁଂଫିତ ଗଗନ ତଳ, ଘନଘଟାର ଭୀମକାଂତ ଛବି, ପ୍ରାତସ୍ତନ ଗଗନର ଅରୁଣ ଦ୍ୟୁତି, ପର୍ବତର ମହୀୟସ୍ତା, ସମୁଦ୍ରର ଗାଂଭୀର୍ଯ୍ୟ, ଫୁଲର ଶୋଭା ପ୍ରଭୃତି ଯେତେବେଳେ ସେ ଦେଖିଲା, ଅରଣ୍ୟାନୀର ମର୍ମର, ଗିରିନଦୀର ଝର୍ଝର, ପତତ୍ରୀର କଳତାନ ପ୍ରଭୃତି ଯେତେବେଳେ ସେ ଶୁଣିଲା, ତାହାର ହୃଦୟ କି ଭାବରେ ନାଚିଉଠିଲା;

ଏପରି କି ଦରିଦ୍ରର ଦୁଃଖ, ଆତ୍ମୀୟ-ନାଶର ଶୋକ, ରୋଗୀର ଯଂତ୍ରଣା ଦେଖି କାହିଁକି, କିପରି ତାର ପ୍ରାଣ ସଂକୁଚିତ ହେଲା, ଜାଣେ ନାଇ କାହିଁକି ସେ ସବୁରେ ସେ ବେଳେବେଳେ ଆତ୍ମହରା ହେଲା। ଏ ଗଛଟି ସାନ ସେ ଗଛଟି ବଡ଼, ଏଇଟି ନିକଟ ସେଇଟି ଦୂର, ଏ ଉଚ୍ଚ ସେ ନୀଚ, ଏସବୁ କଥା କିପରି ସେ ଜାଣି ବାଛି କ୍ରିୟା-ବିଧାନ କଲା, ତାହା ମଧ୍ୟ ସେ ବୁଝିଲାନାଇ। ଫଳତଃ ସେ ଅନୁଭବ କଲା, ଅଜ୍ଞାତ ଭାବରେ ଅନଂତ ଚିତ୍ର ବିଶ୍ୱର ଶକ୍ତି ସବୁ ତାହାର ଶରୀର, ଅଂଗ, ପ୍ରତ୍ୟଂଗ, ଇଂଦ୍ରିୟାଦିଠାରୁ ବୁଦ୍ଧି, ଭାବ ଓ କ୍ରିୟା ପର୍ଯଂତ କିପରି, କେତେବେଳେ ତିଆରି କରିଦେଲେ। କେବଳ ତିଆରି କରିଦେଲେ ନୁହେ, ସେ ନିଜକୁ ସେହି ସବୁ ଶକ୍ତିର ଗୋଟିଏ ପୁଂଜୀଭୂତ ଅବତାର ବୋଲି ବିଚାରକଲା। ତାକୁ ଲାଗିଲା, ସେହି ସବୁ ଶକ୍ତି ଯେପରି କି ତାହା ଭିତରେ ପଶିଗଲେ; ତାହା ବ୍ୟତୀତ ଆଉ ତାହାର ନିଜର ସ୍ୱତଂତ୍ର ସତ୍ତା ନାଇ। ତେଣୁ ସେ ଭାବିବାକୁ ଆରଂଭ କଲା, ଏ ବିଶ୍ୱସାରା ଯେଉଁ ମହାଶକ୍ତିର ବିକାଶ, ମୁଁ ମଧ୍ୟ ସେହି ମହାଶକ୍ତି; ଭେଦ ଅସଂଭବ। ମୁଁ ସେହି 'ସୋଽହଂ'।

ଉପନିଷଦ୍ ପ୍ରଭୃତି ଆର୍ଯ ଶାସ୍ତ୍ରମାନଂକରେ ବୈଦିକ ବ୍ୟକ୍ତିତ୍ୱ ବିକାଶର ଏହି ଲକ୍ଷଣମାନ ସୁସ୍ପଷ୍ଟ ଦେଖିବାକୁ ମିଳେ। ଅଥର୍ବବେଦୀୟ ପ୍ରଶ୍ନୋପନିଷଦ୍‌ରେ ସମସ୍ତେ ଏହି ଭାବର ସ୍ପଷ୍ଟ ବିକାଶ ଅନୁଭବ କରିପାରିବେ। ଯେଉଁ ଆତ୍ମା ଭିତରେ ବାହାରେ ସମାନ, ସେ "ଦ୍ରଷ୍ଟା, ସ୍ରଷ୍ଟା, ଶ୍ରୋତା, ଘ୍ରାତା, ରସୟିତା, ମଂତା, ବୋଦ୍ଧା, କର୍ତା ଓ ବିଜ୍ଞାନ" ସ୍ୱରୂପ ହୋଇ ମଧ୍ୟ "ପରେଽକ୍ଷରେ ଆତ୍ମନି" ଅର୍ଥାତ୍, ବହିଃପ୍ରକୃତିର ବ୍ୟାପକତାରେ ପ୍ରତିଷ୍ଠିତ। ତାହାଂକର ସ୍ୱରୂପ ନିର୍ଣୟ କରି ଋଷି ଗାଇଅଛଂତି—

"ପୃଥିବୀ ଚ ପୃଥିବୀ ମାତ୍ରା, ଆପଶ୍ଚାପୋମାତ୍ରା ଚ, ତେଜଶ୍ଚ ତେଜୋ ମାତ୍ରା, ଚ ବାୟୁଶ୍ଚ ବାୟୁ ମାତ୍ରା, ଚାକାଶଶ୍ଚାକାଶ ମାତ୍ରାଚ, ଚକ୍ଷୁଶ୍ଚ ଦ୍ରଷ୍ଟବ୍ୟଂ ଚ, ଶ୍ରୋତ୍ରଂଚ ଶ୍ରୋତବ୍ୟଂଚ, ଘ୍ରାଂଣ ଚ ଘ୍ରାତବ୍ୟଂ ଚ, ରସଶ୍ଚ ରସୟିତବ୍ୟଂ ଚ, ତ୍ୱକ୍‌ଚ ସ୍ପର୍ଶୟିତବ୍ୟଂଚ, ବାକ୍‌ଚ ବକ୍ତବ୍ୟଂଚ, ହସ୍ତୌଚାଦତବ୍ୟଂ ଚ, ଉପସ୍ଥଂ ଚାନଂଦୟିତବ୍ୟଂଚ, ପାୟୁଶ୍ଚ ବିସର୍ଜୟିତବ୍ୟଂଚ, ପାଦୌଚ ଗନ୍ତବ୍ୟଂଚ, ମନଶ୍ଚ ମନ୍ତବ୍ୟଂଚ, ବୁଦ୍ଧିଶ୍ଚ ବୋଦ୍ଧବ୍ୟଂଚ, ଅହଂକାରଶ୍ଚାହଂକର୍ତ୍ତବ୍ୟଂ ଚ, ଚିତ୍ତଂଚ ଚେତୟିତବ୍ୟଂଚ, ତେଜଶ୍ଚ ବିଦ୍ୟୋତୟିତବ୍ୟଂଚ, ପ୍ରାଣଶ୍ଚ ବିଧାରୟିତବ୍ୟଂଚ।"

ଏ ସମସ୍ତ, ବୃକ୍ଷକୁ ପକ୍ଷୀମାନେ ଆଶ୍ରା କଲା ପରି, ଆତ୍ମାକୁ ଆଶ୍ରା କରଂତି। ଏସବୁର ଆବରଣ ମଧ୍ୟରେ ଆତ୍ମାକୁ ଦେଖିବାକୁ ହେବ। ଏସବୁ ଆତ୍ମାର ଶରୀର ଓ ଅବୟବ ପରି। ବାହାରେ ଏହି ସବୁ ବିଶ୍ୱାତ୍ମାର ଅବୟବ ଓ ଏହିମାନେହିଁ ବ୍ୟକ୍ତିର ଭିତରେ ଅବ୍ୟକ୍ତ ଶକ୍ତିର ଆବରଣ।

ସାଂଖ୍ୟକାର ମଧ୍ୟ ତାଂକର ପରିଣାମବାଦ ବୁଝାଇଲାବେଳେ ବ୍ୟକ୍ତିତ୍ୱ ବିକାଶର ଏହି ମୌଳିକ ସତ୍ୟକୁ ସ୍ପଷ୍ଟ ଲକ୍ଷ୍ୟ କରିଅଛଂତି। ସେ ସ୍ଥିର କରିଛଂତି, ପଂଚତନ୍ମାତ୍ର ଅର୍ଥାତ୍ କ୍ଷିତ୍ୟପ୍‌ତେଜମରୁଦ୍‌ବ୍ୟୋମ, ଏହି ପଂଚ ମହାଭୂତମାନଂକର ସୂକ୍ଷ୍ମ ଅବସ୍ଥାରୁ ରୂପ, ରସ, ଗଂଧ, ସ୍ପର୍ଶ, ଶବ୍ଦ ସୂତ୍ରରେ କ୍ରମେ ଇଂଦ୍ରିୟମାନଂକର ବିକାଶ ଏବଂ ପରେ ତହିଁରୁ ମହାଭୂତମାନଂକର ଆବିର୍ଭାବ। ଫଳତଃ ତନ୍ମାତ୍ର ଓ ମନୁଷ୍ୟର ଷୋଳଟି ଇନ୍ଦ୍ରିୟ (ଚକ୍ଷୁ କର୍ଣ ପ୍ରଭୃତି ପଂଚ ଜ୍ଞାନେନ୍ଦ୍ରିୟ, ହସ୍ତପଦ ପ୍ରଭୃତି ପଂଚ କର୍ମେନ୍ଦ୍ରିୟ, ପୃଥିବୀ ଜଳ ପ୍ରଭୃତି ପଂଚ ମହାଭୂତ ଓ ମନ) ଭିତରେ ସେ କୌଣସି ପ୍ରକୃତିଗତ ପ୍ରଭେଦ ଦେଖି ନାହାଂତି। ଏଠାରେ ଯେଉଁ ସ୍ୱାଭାବିକ ବ୍ୟକ୍ତିତ୍ୱ ବିକାଶର କଥା କୁହାଗଲା, ସେଥିରେ ମଧ୍ୟ ଠିକ୍ ତାହାହିଁ ଦେଖାଯାଉଅଛି।

ଆଂଭେମାନେ ଗୋଟିଏ ବ୍ୟକ୍ତିର ମୌଳିକ ଓ ସ୍ୱାଭାବିକ ବିକାଶ ଦେଖିଲୁ ଏବଂ ଦେଖିଲୁଁ ଆଂଭମାନଂକର ପ୍ରାଚୀନ ପୁରୁଷମାନେ ବ୍ୟକ୍ତିର ଏହି ମୌଳିକ ବିକାଶ ଲକ୍ଷ୍ୟ କରି, ସେହି ଅନୁସାରେ ଜଗତ୍‌ର ବ୍ୟାଖ୍ୟା କରିଅଛଂତି। ମାତ୍ର ଆଂଭମାନଂକୁ ଆହୁରି ଦେଖିବାକୁ ହେବ, ଏହି ସ୍ୱାଭାବିକ ସାଧନାରେ, ଏହି ବ୍ୟକ୍ତିଜୀବନର ମୌଳିକ ବିକାଶ ପରି, ଆର୍ଯ୍ୟର ଜାତୀୟ ଜୀବନ ବିକାଶ ପାଇଛି। ଗୋଟିଏ ବ୍ୟକ୍ତିରେ ଆଂଭେମାନେ ଯାହା ଦେଖିଲୁଁ, ଆର୍ଯ୍ୟର ଜାତୀୟ ବ୍ୟକ୍ତିତ୍ୱରେ ସେହି ବିକାଶ ସେହି ପ୍ରାକୃତିକ ସାଧନା ଦେଖିବୁଁ।

ସୁଖର କଥା, ଜାତିର ଅତି ଅଜ୍ଞାନ ଶୈଶବ କଥା ବର୍ତମାନର ବିଜ୍ଞାନ-ଦୃଷ୍ଟିରେ ଯାହା ହେଉ, ଅତି ଆଦିମକାଳରୁ ଆର୍ଯ୍ୟଜୀବନର ବିକାଶ ପ୍ରଣାଳୀ, ସ୍ୱାଭାବିକ ସାଧନା ଓ ଆଦର୍ଶ ଲକ୍ଷ୍ୟ କରି ବ୍ୟାଖ୍ୟା କରିବାରେ ଆଂଭମାନଂକର ବିଶେଷ ଅସୁବିଧା କିଛି ନାଇ। ଉପରେ ବ୍ୟକ୍ତିତ୍ୱ ବିକାଶ ସଂବଂଧରେ ଉପନିଷଦ୍‌ରୁ ଯାହା ପ୍ରମାଣ ଦିଆଗଲା, ତାହା ବ୍ୟକ୍ତି ସଂବଂଧରେ ଯେପରି ପ୍ରଯୋଜ୍ୟ, ଜାତୀୟ ଜୀବନ ସଂବଂଧରେ ମଧ୍ୟ ଠିକ୍ ସେହିପରି। ଆର୍ଯ୍ୟର ମଧ୍ୟ ଜାତୀୟ ଜୀବନର ପରମ ଆଦର୍ଶ ସେହି 'ସୋଽହଂ'। ସମସ୍ତ ବିଶ୍ୱରେ ଆତ୍ମାକୁ ବ୍ୟାପ୍ତ ଦେଖିବା ଏବଂ ଆତ୍ମାରେ ବିଶ୍ୱକୁ ପ୍ରତିଫଳିତ ଦେଖିବାହିଁ ଆର୍ଯ୍ୟର ଜାତୀୟ ଭାବ ଓ ଜାତୀୟ ଆଦର୍ଶ।

ବସ୍ତୁତଃ ଏଠାରେ ଜାତୀୟ ଭାବ ବୋଲି ଅଲଗା ଗୋଟିଏ ଭାବ ନାଇ। ଏହା ବ୍ୟକ୍ତିଠାରେ ଦେଖାଯାଏ ଏବଂ ଯେଉଁ ଭାବଗୁଡ଼ିକ ଜାତିର ସମସ୍ତଂକଠାରେ ସାଧାରଣ ଭାବରେ ଦେଖାଯାଏ, ତାହାହିଁ ଜାତୀୟ ଭାବ; ସେଥିରୁହିଁ ଜାତୀୟ ବ୍ୟକ୍ତିତ୍ୱର ପ୍ରକୃତି ଓ ଆଦର୍ଶ ଜଣାପଡ଼େ; ପୁଣି ସେ ସବୁ ଭାବରାଶିର ମଧ୍ୟ ଗୋଟିଏ ସମୂହ ବ୍ୟକ୍ତିତ୍ୱ ଥାଏ। ଏହି ସମୂହ ବ୍ୟକ୍ତିତ୍ୱ ମଧ୍ୟ ବ୍ୟକ୍ତି-ଜୀବନ ନିୟମରେ ବୃଦ୍ଧି ଓ କ୍ଷୟ ପାଏ। ସେହି ଜାତୀୟ ଭାବ ଆଦର୍ଶର ସାଧନା

ବା କ୍ରମବିକାଶ ଦେଖିବାକୁ ହେଲେ, ଆଂଭେମାନେ ପୃଥିବୀର ପୁରାଣତମ ଗ୍ରଂଥ ଓ ଆର୍ଯ୍ୟର ମହା ମୌଳିକ ସଂପଦ ବେଦରୁ ଅନୁସଂଧାନ କରି ଆସିବୁଁ ଏବଂ ବ୍ୟକ୍ତିଜୀବନରେ ଆଂଭେ ଯାହା ଆଲୋଚନା କରିଅଛୁଁ, ତାହାପ୍ରତି ଲକ୍ଷ୍ୟ ରଖି ପଦେ ପଦେ ଆଂଭମାନଂକୁ ଏହି ପ୍ରାକୃତିକ ଜାତୀୟ ସାଧନା ଅନୁସଂଧାନ କରିବାକୁ ହେବ। ଏହି କ୍ଷୁଦ୍ର ପ୍ରବଂଧରେ ବିଶେଷ ବିବୃତି ଦେବାର ଅବକାଶ ନାଇ; ତେଣୁ ସାମାନ୍ୟ ଭାବରେ ବିକାଶର ବିଭିନ୍ନ ଅବସ୍ଥାକୁ ଲକ୍ଷ୍ୟ କରିବୁଁ ମାତ୍ର।

ଆଂଭେମାନେ କହୁଁ, ବେଦରେ ମୌଳିକ ମାନବର ଆଦିମ ଅନୁଭୂତି ସ୍ପଷ୍ଟ ପ୍ରକାଶିତ ହୋଇପଡ଼ିଅଛି। ବେଦରେ ବିଶ୍ୱବାଣୀ ଶୁଦ୍ଧ ସରଳ ଭାବରେ ଆର୍ଯ୍ୟ ଋଷିକଂଠ ଭେଦି ସ୍ୱତଃ ପ୍ରକାଶ ପାଇଅଛି; ମାତ୍ର ଆଜି କର୍ମ-କାରଣ-ବାଦୀ ଅନୁସଂଧାନପର ପଂଡିତମାନେ କହଂତି, ଆର୍ଯ୍ୟଜାତିର ମଧ୍ୟ ଅତି ନବୀନ ଶୈଶବର କଥା ବେଦରେ ପ୍ରକାଶ ପାଇନାଇ। ସେତେବେଳର ସାହିତ୍ୟ କିଛି ନାଇ। ସେତେବେଳର ସାହିତ୍ୟ ଥିଲେ, ଅବଶ୍ୟ ସେଥିରେ ସାଧାରଣ ଶିଶୁର ଦ୍ୱୈତଭାବ ପ୍ରକାଶ ପାଇଥାଂତା। ସେତେବେଳେ ହୁଏତ ସମସ୍ତ ପଶୁ ପକ୍ଷୀ ପରି ଜୀବନ ଚଳାଉଥିବେ। ନିଜକୁ ଜଗତ୍‌ରୁ ବିଚ୍ଛିନ୍ନ ମଣି ପ୍ରକୃତିକୁ ପଦେ ପଦେ ଆକ୍ରମଣ କରି ଖାଦ୍ୟାଦି ଆହରଣପୂର୍ବକ ଜୀବିକା ଚଳାଉଥିବେ।

ତା ଉତ୍ତାରୁ କ୍ରମଶଃ ଜଗତ୍‌ର ଭିନ୍ନ ଭିନ୍ନ ବସ୍ତୁରେ ଶକ୍ତି ଦେଖି ପୂଜା କରିବାର ଅବସ୍ଥା। ଏହାକୁ ଇଉରୋପୀୟ ପଂଡିତମାନେ ଜଡ଼ରେ ଜୀବନବାଦ (Animism) ବୋଲି କହଂତି। ଋଗ୍‌ବେଦରେ ଇଂଦ୍ର, ବରୁଣ, ସୋମ, ଅଗ୍ନି ପ୍ରଭୃତିଂକୁ ଉପାସନା କରି ଋଷିମାନେ ଯେଉଁ ସବୁ ମଂତ୍ର ଗାଇଅଛଂତି, ତାକୁ କୌଣସି କୌଣସି ଇଉରୋପୀୟ ପଂଡିତ ଏହି 'ଜଡ଼ରେ ଜୀବନବାଦ' ଅନୁଭବର ଫଳ ବୋଲି କହୁଥିଲେ। ମାତ୍ର ମାକ୍‌ସମୁଲାର ପ୍ରଭୃତି ଅପର ଇଉରୋପୀୟ ସତ୍ୟସଂଧିତ୍ସୁମାନେ ପ୍ରମାଣ କରି ଦେଖାଇଦେଇଛଂତି, ଆର୍ଯ୍ୟ ଜାତୀୟ ମୌଳିକତା ବଡ଼ ସାରବାନ୍। ସେଥିରେ 'ଜଡ଼ ଜୀବନବାଦ'ର ଅବସ୍ଥା ଆଦୌ ଘଟିଛି କି ନା, ସଂଦେହ। ଜାତୀୟ ଜୀବନର ଅତି ପ୍ରାରଂଭରେ ମଧ୍ୟ ଆର୍ଯ୍ୟ ପ୍ରତ୍ୟେକ ଜଡ଼ଶକ୍ତିର ଅଂତରାଳରେ ସମୂହ ବିଶ୍ୱଶକ୍ତି ଅନୁଭବ କରି ଆରାଧନା କରିଅଛି। ମାକସମୁଲାର୍ ଏହାକୁ ଜଡ଼ ଜୀବନବାଦ ନ କହି, ଜଡ଼ଶକ୍ତିରେ ବିଶ୍ୱଜୀବନ ଭାବ (Henotheism) ବୋଲି କହିଅଛଂତି। ଋଗ୍‌ବେଦ-ସଂହିତାର ମଂତ୍ରସବୁ ଦେଖିଲେ ହଠାତ୍ ବୋଧହୁଏ, ଋଷିମାନେ ସ୍ୱତଂତ୍ରଭାବରେ ଭିନ୍ନ ଭିନ୍ନ ଶକ୍ତିର ପୂଜା କରିଅଛଂତି; କିଂତୁ ଅନୁସଂଧାନ କଲେ ଦେଖାଯାଏ, ପ୍ରତ୍ୟେକ ଶକ୍ତିରେ ସେମାନେ ସେହି ମହାବିଶ୍ୱଶକ୍ତିହିଁ ଦେଖିଅଛଂତି। ଇନ୍ଦ୍ର, ଅଗ୍ନି ପ୍ରଭୃତି ନାନା ନାମରେ ସେମାନେ ସେହି ମହାବିଶ୍ୱୈକଶକ୍ତିର ଧାରଣା କରିଅଛଂତି। ସ୍ୱତଂତ୍ର ଭାବରେ ସେମାନେ ଇଂଦ୍ର, ଅଗ୍ନି ପ୍ରଭୃତିର ପୂଜା କରିଅଛଂତି ସତ; କିଂତୁ

ଯେତେବେଳେ ଯାହାକୁ ପୂଜା କରିଅଛନ୍ତି, ସେଥିରେ ଅନନ୍ତ ବିଶ୍ୱଶକ୍ତି କଳ୍ପନା କରିଅଛନ୍ତି ।

ଉଦାହରଣ ସ୍ୱରୂପ, ଋଷି ପରୁଚ୍ଛେପ ଅଗ୍ନିଙ୍କୁ ଆରାଧନା କରି କହୁଅଛନ୍ତି– ''ବିଶ୍ୱୋ ବିହାୟାଃ ।'' (ଋଗ୍‌ବେଦ ମଣ୍ଡଳ ୧, ସୂକ୍ତ ୧୨୯୪, ମନ୍ତ୍ର ୬) ଅର୍ଥାତ୍, ଅଗ୍ନିହିଁ ସର୍ବବ୍ୟାପୀ ଶକ୍ତି । ପୁଣି ମଣ୍ଡଳ ୩, ସୂକ୍ତ ୪୬, ମନ୍ତ୍ର ୩ରେ ବିଶ୍ୱାମିତ୍ର ଋଷି ଇନ୍ଦ୍ରଙ୍କୁ କହୁଅଛନ୍ତି–

''ପ୍ରମାତ୍ରାଭିରିରିଚେ ରୋଚମାନଃ
ପ୍ରଦେବେଭିଃ ବିଶ୍ୱତୋ ଅପ୍ରତୀତଃ
ପ୍ରମଜ୍ମନା ଦିବ ଇନ୍ଦ୍ରଃ ପୃଥିବ୍ୟା
ପ୍ରରୋର୍ମହୋ ଅନ୍ତରୀକ୍ଷା ଦୃଜୀଷୀ ।''

ଅର୍ଥାତ୍, ତୁମ୍ଭେ ପର୍ବତଠାରୁ ବଡ଼, କୌଣସି ପ୍ରକାରେ ତୁମ୍ଭର ଇୟତ୍ତା ନାଇ । ତୁମ୍ଭେ ଶକ୍ତିରେ ସ୍ୱର୍ଗ, ମର୍ତ୍ତ୍ୟ ସବୁ ଅଭିଭୂତ କରିଅଛ, ଇତ୍ୟାଦି । ପୁଣି ପ୍ରଥମ ମଣ୍ଡଳ, ସୂକ୍ତ ୧୬, ୧ମ ମନ୍ତ୍ରରେ କଶ୍ୟପ-ପୁତ୍ର ମୋଧତିଥି କହୁଅଛନ୍ତି–

''ଇନ୍ଦ୍ରବରୁଣୟୋରହମ୍ ସମ୍ରାଜୋରବ ଆବୃଣେ, ତାନୋମୃଳାତ ଇଦୃଶେ ।''

ଅର୍ଥାତ୍ ମୁଁ ଇନ୍ଦ୍ର ବରୁଣଙ୍କୁ ଆରାଧନା କରୁଅଛି । ସେମାନେ ସମସ୍ତଙ୍କ ଉପରେ ଅଧିପତି (ସବୁଠାରୁ ବଡ଼ ଦେବତା) । ତେଣୁ ସେମାନେ ଆମ୍ଭଙ୍କୁ ସବୁ ସୁଖ, ସମୃଦ୍ଧି ଦେବେ ।

ଏହିପରି ଋଷିମାନେ ପ୍ରତ୍ୟେକ ଶକ୍ତିକି ଉପାସନା କରିଅଛନ୍ତି; କିନ୍ତୁ ସେମାନେ ଯେ ଭିନ୍ନ ଭିନ୍ନ ଶକ୍ତିର ଅନ୍ତରାଳରେ ବିଶ୍ୱଶକ୍ତି ଦେଖିଅଛନ୍ତି, ତାହା ମଧ୍ୟେ ମଧ୍ୟେ ଏହିପରି ସ୍ପଷ୍ଟ ହୋଇଅଛି । ପ୍ରତ୍ୟେକ ଦେବତାର ସ୍ୱତନ୍ତ୍ର ଉପାସନା କଲାବେଳେ ଆର୍ଯ୍ୟ ଋଷିମାନେ ବେଳେବେଳେ 'ବିଶ୍ୱେଦେବା' ଶବ୍ଦ ବ୍ୟବହାର କରି ଉପାସନା ମଧ୍ୟ କରିଅଛନ୍ତି ଏବଂ ସେଥିରେ ତାଙ୍କର ବିଶ୍ୱଶକ୍ତିର ଧାରଣା ପରିସ୍ଫୁଟ ହୋଇଅଛି । ପ୍ରଥମ ମଣ୍ଡଳ ୧୬୪ ସୂକ୍ତର ୪୬ ମନ୍ତ୍ରରେ ସେହି ବିଶ୍ୱେଦେବାର ଆବାହନ କରି ଋଷି ଦୀର୍ଘତମାଃ ସ୍ପଷ୍ଟ ଗାଇଅଛନ୍ତି–

''ଇନ୍ଦ୍ରଂ ମିତ୍ରଂ ବରୁଣମଗ୍ନିମାହୁର
ତଥା ଦିବ୍ୟଃ ସ ସୁପର୍ଣ୍ଣୋ ଗରୁତ୍ମାନ୍
ଏକଂ ସଦ୍‌ବିପ୍ରା ବହୁଧା ବଦନ୍ତ୍ୟଗ୍ନିଂ
ଯମଂ ମାତରିଶ୍ୱାନମାହୁଃ ।''

ଅର୍ଥାତ୍, ସେହି ବିଶ୍ୱେଦେବା ଅର୍ଥାତ୍ ବିଶ୍ୱଶକ୍ତିଙ୍କୁ ଋଷିମାନେ ଇନ୍ଦ୍ର, ମିତ୍ର, ବରୁଣ, ଅଗ୍ନି ବୋଲି କହନ୍ତି । ସୁପର୍ଣ୍ଣ ଅର୍ଥାତ୍ ସୁନ୍ଦର ପକ୍ଷଯୁକ୍ତ ଦୀର୍ଘ ଗରୁତ୍ମାନ୍ ମଧ୍ୟ ସେହି । ସେ ଏକ ହେଲେ ମଧ୍ୟ (ଶକ୍ତିବିକାଶର ପ୍ରକାଶଭେଦ ଅନୁସାରେ) ବିପ୍ର(ଋଷି)ମାନେ ତାଙ୍କୁ ଅଗ୍ନି, ଯମ, ମାତରିଶ୍ୱା ପ୍ରଭୃତି ନାମରେ କହନ୍ତି ।

ବେଦରେ ଏହିପରି ବିଶ୍ୱର ପ୍ରତ୍ୟେକ ଶକ୍ତିର ଅଂତରାଳରେ ଅନଂତ ମଂଗଳମୟଂଙ୍କର ବିଶ୍ୱ ବିକାଶ ଆରାଧିତ ହେବାର ଦେଖାଯାଏ। ଋଗ୍‌ବେଦର ପୁରୁଷସୂକ୍ତରେ ମଧ୍ୟ ସେଥିପାଇଁ ଋଷି ବୁଝାଇ କହିଅଛଂତି—

"ସହସ୍ରଶୀର୍ଷା ପୁରୁଷଃ ସହସ୍ରାକ୍ଷଃ ସହସ୍ରପାତ୍
ସଭୂମିଂ ବିଶ୍ୱତୋ ବୃତ୍ୱାଽଅତ୍ୟତିଷ୍ଠତ୍।"

ଅର୍ଥାତ୍, (ସର୍ବଶକ୍ତିରୂପ) ସେ ପୁରୁଷ ଅସଂଖ୍ୟ ମସ୍ତକ, ଅସଂଖ୍ୟ ଚକ୍ଷୁ, ଅସଂଖ୍ୟ ପାଦମୟ ରୂପରେ ସର୍ବପ୍ରକାରରେ ଏ ଭୂମି ଅର୍ଥାତ୍ ସର୍ଗ କ୍ଷେତ୍ର ବା ସୃଷ୍ଟ ସ୍ଥାନକୁ ଆବୃତ କରି, ଏଥିଁ ଅଧିକରେ ପରିବ୍ୟାପ୍ତ ଥିଲେ।

କିଂତୁ ଏ ସବୁ ଧାରଣାରେ ଜାତୀୟ ବ୍ୟକ୍ତିତ୍ୱର ଦ୍ୱୈତ ଭାବ ମଧ୍ୟ ପ୍ରକାଶ ପାଉଅଛି। ଆର୍ଯ୍ୟ-ସଂତାନ ଅନଂତ ବିଶ୍ୱଶକ୍ତି ଅନୁଭବ କରୁଅଛଂତି, ଉପାସନା କରୁଅଛଂତି; କିଂତୁ ସେ ଶକ୍ତିର ଯେପରି କି ପ୍ରକୃତ ବ୍ୟାଖ୍ୟା ପାଉନାହାଂତି। ସେଥିପାଇଁ ଦ୍ୱୈତଭାବ ପୁଣି ଫୁଟିଉଠୁଅଛି। ଅଜ୍ଞାତଭାବରେ ଋଷିକଂଠ ଭେଦି ଉପାସନାର ବାଣୀ ବାହାରୁଅଛି।

ଏହି ଅଜ୍ଞାତ ବିଶ୍ୱବୋଧଜ୍ଞାନର ବ୍ୟାଖ୍ୟା ପାଇବାରେ ସ୍ପଷ୍ଟ କ୍ରମବିକାଶ ଅନୁସଂଧାନ କରାଯାଇପାରେ। ବେଦର ସଂହିତା କେବଳ ଆରାଧନାର ସରଳ ମଂତ୍ର। ସେଥିରେ କେବଳ ବିଶ୍ୱଶକ୍ତିର ଅବବୋଧ ରହିବାହିଁ ସ୍ୱାଭାବିକ। ସେତେବେଳେ ବିଶ୍ୱଶକ୍ତି ସଂଗେ ମାନବ କର୍ମ ସଂପର୍କରେ ଆସିଛି; କିଂତୁ ଏ ସଂପର୍କ ସ୍ପଷ୍ଟ ହୋଇନାଇ।

ସଂହିତା ପରେ 'ବ୍ରାହ୍ମଣ'। ବ୍ରାହ୍ମଣରେ କ୍ରିୟା-କାଂଡର ବିସ୍ତାର। ଏଠାରେ ମୁଖ୍ୟ ଭାବରେ ଜାତି ବିଶ୍ୱଶକ୍ତି ସଂଗେ ନାନା ସଂପର୍କରେ ଆସିବାର ଉଦାହରଣ ମିଳେ। ଯାଗ, ଯଜ୍ଞାଦିର ବିପୁଳ ଆୟୋଜନ ଓ ନାନାବିଧ ସାଡଂବର ପୂଜା-ପଦ୍ଧତିରେ ଜାତି ଏଠାରେ ବିଶ୍ୱଶକ୍ତିର ବ୍ୟବହାର କରିଅଛି। ଏଥିରେ ବିଶ୍ୱଶକ୍ତି ସଂଗେ ଇଂଦ୍ରିୟ ଅବୟବାଦିର ଏକତ୍ୱବୋଧ ଫୁଟିଉଠିବାର କଥା। ସେଥିପାଇଁ ବ୍ରାହ୍ମଣରୁ ଉପନିଷଦ୍‌ର ଭୂୟୋବିକାଶ। ଏହିଠାରେ ପ୍ରଥମେ ବିଶ୍ୱଶକ୍ତିମାନଂଙ୍କରୂ ଇଂଦ୍ରିୟ ଅବୟବାଦିର ସୃଷ୍ଟି ବା ଇଂଦ୍ରିୟାଦି ଏହି ସବୁ ଶକ୍ତିମୟ ବା ଶକ୍ତିସ୍ୱରୂପ ବୋଲି ସ୍ପଷ୍ଟ ଅନୁଭୂତିର ଉଦ୍ରେକ ହୋଇଅଛି ଏବଂ ସେହି ହେତୁରୁ ଋଗ୍‌ବେଦ-ସଂହିତାରେ ସେ ଚିଂତା ତାଦୃଶ ସ୍ପଷ୍ଟ ନ ଥିଲେହେଁ ପ୍ରାଚୀନ ଉପନିଷଦ୍‌ମାନଂକରେ ପୂର୍ଣ ବିକାଶ ପାଇଥିବାର ଦେଖାଯାଏ।

ଉପନିଷଦ୍‌ରେ କେତେବେଳେ ଜଗତ୍‌ର ପ୍ରକୃତି (ପଦାର୍ଥ) ସଂଗେ ମାନବର ଇଂଦ୍ରିୟ ଓ ଶରୀର ଏକ ବୋଲି କୁହାଯାଇଅଛି; କେତେବେଳେ ବା କୁହାଯାଇଅଛି, ଜଗତ୍‌ର ଶକ୍ତିରେ ଇଂଦ୍ରିୟର ଶକ୍ତିମାନେ ପ୍ରଭାବିତ ଏବଂ ଦୁହେଁ ପରସ୍ପରରୁ ଅଭିନ୍ନ। ଏହିପରି କେତେବେଳେ ଦ୍ରବ୍ୟ, କେତେବେଳେ ଶକ୍ତି ନାମରେ ଭିତର

ଓ ବାହାରର ଅଭେଦ କଳ୍ପନା ଦେଖିବାକୁ ମିଳେ। ସ୍ଥୂଳତଃ ବହିର୍ଜଗତ୍‌ର ବ୍ୟାପକ ଶକ୍ତିର ପ୍ରେରଣାରେ ଇଂଦ୍ରିୟାଦିମାନେ ଶକ୍ତିସଂପନ୍ନ ଓ କ୍ରିୟାବାନ୍ ଏବଂ ଫଳରେ ସେହି ଇଂଦ୍ରିୟାଦିମାନେ ବିଶ୍ୱବ୍ୟାପୀ ଶକ୍ତି ବା ବିଶ୍ୱାତ୍ମାରୁ ଜାତ; ସେମାନଂକର ପ୍ରକୃତି ଅଭିନ୍ନ— ଏହି ଭାବ ଉପନିଷଦ୍‌ରେ ପ୍ରାୟ ସର୍ବତ୍ର ଦେଖିବାକୁ ମିଳେ। କେନୋପନିଷଦ୍‌ରେ ଋଷି ପ୍ରଥମେ ଗାଇଅଛଂତି—

"କେନେଷିତଂ ପତତି ପ୍ରେଷିତଂ ମନଃ
କେନପ୍ରାଣଃ ପ୍ରଥମଂ ପ୍ରୈତି ଯୁକ୍ତଃ
କେନେଷିତାଂ ବାଚମିମାଂ ବଦଂତି
ଚକ୍ଷୁଃ ଶ୍ରୋତ୍ରଂ କଉଦେବୋଯୁନକ୍ତି।"

ଅର୍ଥାତ୍, ମନ କାହାଦ୍ୱାରା ପ୍ରେରିତ (ପ୍ରଭାବିତ) ହୋଇ ନିଜର କର୍ମ କରେ? ପ୍ରାଣ ସର୍ବଶ୍ରେଷ୍ଠ ଶକ୍ତି ହେଲେହେଁ, କାହାଦ୍ୱାରା ଚାଳିତ (ପ୍ରଭାବିତ) ହୋଇ ନିଜ ବିଷୟରେ ନିଯୁକ୍ତ ହୁଏ, କି ଶକ୍ତିର ପ୍ରଭାବରେ ଲୋକେ କଥା କହଂତି, କେଉଁ ଦେବତା ଚକ୍ଷୁ କର୍ଣ୍ଣକୁ ସେମାନଂକ ବିଷୟ ବ୍ୟାପାରରେ ଲଗାଂତି?— ଏହି ପ୍ରଶ୍ନମାନଂକ ଉତ୍ତରରେ ପରବର୍ତ୍ତୀ ମଂତ୍ରରେ କୁହାଯାଇଅଛି—

"ଶ୍ରୋତ୍ରସ୍ୟ ଶ୍ରୋତ୍ରଂ ମନସୋ ମନଃ
ଯଦ୍‌ବାଚୋହ ବାଚଂ, ସଃ ପ୍ରାଣସ୍ୟ ପ୍ରାଣଃ
ଚକ୍ଷୁ ସଶ୍ଚକ୍ଷୁ ରତି ମୁଚ୍ୟ ଧୀରାଃ
ପ୍ରେତ୍ୟାସ୍ମାଲ୍ଲୋକାଦମୃତା ଭବନ୍ତି।"

ଅର୍ଥାତ୍, ସେହି ପରମାତ୍ମଶକ୍ତି କର୍ଣ୍ଣର କର୍ଣ୍ଣ (ଶ୍ରବଣଶକ୍ତି), ମନର ମନ, ବାକ୍ୟର ବାକ୍ୟ, ସେହି ପ୍ରାଣର ପ୍ରାଣ, ଚକ୍ଷୁର ଚକ୍ଷୁ। ଯେ ଧୀରଭାବରେ ଆଲୋଚନା କରେ, ସେ ଏହିସବୁ ଇଂଦ୍ରିୟକୁ ଆତ୍ମା ବୋଲିବାର ଭ୍ରମ ବୁଝିପାରେ। ପ୍ରକୃତ ଆତ୍ମଶକ୍ତିକୁ ଧାରଣା କରି ଅମୃତତ୍ୱ ପାଏ। ପର ମଂତ୍ରରେ ପୁଣି ଏହି ଶକ୍ତିଧାରଣା ସ୍ପଷ୍ଟ। ସେଥିରେ କୁହାଅଛି—

"ନ ତତ୍ର ଚକ୍ଷୁର୍ଗଚ୍ଛତି ନବାଗଚ୍ଛତି ନୋ ମନଃ
ନ ବିଦ୍ମୋନବିଜ ନୀମୋ ଯଥୈତଦନୁଶିଷ୍ୟାତ୍।"

ଅର୍ଥାତ୍, ସେଠାକୁ ଚକ୍ଷୁ ଯାଏ ନାଇ, ବାକ୍ୟ ଯାଏ ନାଇ, ମନ ଯାଏ ନାଇ। ଆଂଭେମାନେ ଏହା ଜାଣୁ ନାଇ। ଏ ସଂବଂଧରେ ଉପଦେଶ ଦେବାର ଆଂଭଂକୁ ଜଣା ନାଇ। ଜଣା ଅଜଣା ସବୁ ପଦାର୍ଥରୁ ଏହା ଭିନ୍ନ ଏବଂ ସର୍ବୋପରି। ବିଚକ୍ଷଣ ଲୋକମାନେ ଏହିପରି କହିବାର ଆଂଭେମାନେ ଶୁଣିଅଛୁଁ।

ସେ ଶକ୍ତି କୌଣସି ଇଂଦ୍ରିୟଲବ୍‌ଧ ପଦାର୍ଥ ନୁହେ— ଏହା ଏଠାରେ ସ୍ପଷ୍ଟ କୁହାଯାଉଅଛି। ଇଂଦ୍ରିୟଲବ୍‌ଧ ଦ୍ରବ୍ୟ ସଂଗେ ଭ୍ରମ କରିବାକୁ ଋଷି ବାରଣ କରୁଅଛଂତି। ମୁଂଡକ ଉପନିଷଦ୍, ଦ୍ୱିତୀୟ ଭାଗ, ପ୍ରଥମ ଖଂଡ ୩ୟ ମଂତ୍ରରେ କୁହାଯାଏ—

"ଏତସ୍ମାଜ୍ଜାୟତେ ପ୍ରାଣୋ ମନଃ ସର୍ବେନ୍ଦ୍ରିୟାଣି ଚ
ଖଂ ବାୟୁର୍ଜ୍ୟୋତିରାପଃ ପୃଥିବୀ ବିଶ୍ୱସ୍ୟ ଧାରିଣୀ।"

ଅର୍ଥାତ୍ ଏଥିରୁ ପ୍ରାଣ, ମନ, ଇନ୍ଦ୍ରିୟମାନେ, ପଂଚ ମହାଭୂତ ଜାତ ହୁଅଂତି।

ଇନ୍ଦ୍ରିୟାଦି ସଂଗେ ବହିର୍ଜଗତ୍‌ର ସଂବଂଧ ଏଠାରେ ସ୍ପଷ୍ଟ; ମାତ୍ର ଏ ସବୁ ଜଡ଼ ପଦାର୍ଥ ବିଚାରରୁ ଜୀବଂତ ଶକ୍ତିର ଧାରଣାକୁ ଯିବାର ପଂଥା ଦେଖାଉଅଛି। ପ୍ରଥମେ ଇଂଦ୍ରିୟାଦିକୁ ଜଡ଼ ପଦାର୍ଥ ସଂଗେ ଅଭିନ୍ନ ବିଚାର କରାଯାଇଥିଲା ପରି ବୋଧହୁଏ। ବେଳେବେଳେ ଉପନିଷଦ୍‌ରେ ଆପାତତଃ ସେହି ଭାବହିଁ ଦେଖାଯାଏ। ଛାଂଦୋଗ୍ୟ ଉପନିଷଦ୍‌ର ଷଷ୍ଠ ଅଧ୍ୟାୟ, ପଂଚମ ଖଂଡରେ ପ୍ରାଣ, ମନ ପ୍ରଭୃତି ଆତ୍ମାଦ୍ୱାରା ପ୍ରଦତ୍ତ, ଭୁକ୍ତ ପଦାର୍ଥ ଅର୍ଥାତ୍ ଉପଭୋଗ୍ୟ ବିଷୟରେ ନିର୍ମିତ ବୋଲି ଋଷି ଗାଇଅଛଂତି; କିଂତୁ ଏଥିରେ ଜଡ଼ବାଦ ନାଇ। ଜଡ଼ରୁ ଶାଂତିମୟ ଚେତନର ଉଦ୍ଭବ ବୋଲି ବିଚାର କରିବା ଠିକ୍ ନୁହେ। ଆର୍ଯ୍ୟର ସ୍ଥାୟୀ ବିଶ୍ୱଭାବ ଏଥିରୁ ସଂପୂର୍ଣ ପୃଥକ୍। ଆତ୍ମାଦ୍ୱାରା ପ୍ରଦତ୍ତ କଥାଟି ଏଠାରେ ମଧ୍ୟ ରହିଅଛି। ଯେଉଁ ଆର୍ଯ୍ୟ ଋଗ୍‌ବେଦ ମଂତ୍ରରେ ଜଡ଼ର ଅଂତରାଳରେ ଶକ୍ତିର ପୂଜା କରିଅଛି, ତାହାର ଆରାଧନା ମଂତ୍ରରେ ଏ ଜଡ଼ଭାବ ଆପାତତଃ ଅଛି ବୋଲି ମନେହେଲେହେଁ, ଏହା କେବେହେଁ ଶକ୍ତି ଧାରଣାରୁ ଭିନ୍ନ ବୋଲି ବୁଝିବା ଠିକ୍ ନୁହେ।

ଜଡ଼ରୁ ଶକ୍ତିର ବିକାଶ ନୁହେ। ବହିଃ ଶକ୍ତି ଓ ଅଂତଃ ଶକ୍ତି ଦୁହିଂକର ଅଭେଦ-ଭାବର ବିକାଶ; ତେଣୁ ଆଂଭଂକୁ ଲକ୍ଷ୍ୟ କରିବାକୁ ହେବ। ସେହି ଅଭେଦ ଉପଲବ୍ଧି ଆଡ଼କୁ ଯାଇ ଋଷି କହୁଅଛଂତି, "ଅଗ୍ନିର୍ବାକ୍ ଭୂତ୍ୱା ମୁଖଂ ପ୍ରାବିଶତ୍ ଇତ୍ୟାଦି।" —ଐତେରେୟ। ଅର୍ଥାତ୍, ଅଗ୍ନି ବାକ୍ୟରୂପ ଧାରଣ କରି ମନୁଷ୍ୟମୁଖରେ ପ୍ରବେଶ କଲେ, ବାୟୁ ପ୍ରାଣ ହୋଇ ନାସିକାରେ ପ୍ରବେଶ କଲେ, ଇତ୍ୟାଦି।

ଶିଷ୍ୟ ବ୍ରହ୍ମ ପଦାର୍ଥର ସ୍ୱରୂପ ବିଷୟରେ ସଂଦେହ କରି ଗୁରୁଂକୁ ପଚାରିବାରୁ ଗୁରୁ କହୁଅଛଂତି—

"ଯନ୍ମନସା ନ ମନୁତେ, ଯେନାହୁର୍ମନୋ ମତଂ
ତଦେବ ବ୍ରହ୍ମତ୍ୱଂ ବିଦ୍ଧି, ନେଦଂ ଯଦିଦମୁପାସତେ।
ଯଚ୍ଚକ୍ଷୁସା ନପଶ୍ୟତି,
ଯେନ ଚକ୍ଷୁଂସି ପଶ୍ୟତି ତଦେବ ଇତ୍ୟାଦି।
ଯତ୍ ଶ୍ରୋତ୍ରେଣ ନ ଶୃଣୋତି,
ଯେନ ଶ୍ରୋତ୍ର ମିଦଂ ଶ୍ରୁତଂ ତଦେବ ଇତ୍ୟାଦି।
ଯଦ୍ ବାଚାନାଭ୍ୟୁଦ୍ୟତେ, ଯେନ ବାଗଭ୍ୟୁଦ୍ୟତେ
ତଦେବ ଇତ୍ୟାଦି।
ଯତ୍ ପ୍ରାଣେନ ନ ପ୍ରାଣୀତି, ଯେନ ପ୍ରାଣଃ ପ୍ରଣୀୟତେ
ତଦେବ ଇତ୍ୟାଦି।"

ଅର୍ଥାତ୍, ମନରେ ଯାହାକୁ ବୁଝି ହୁଏନାଇ, ଅଥଚ ମନ ଯାହାଦ୍ୱାରା ବୁଝେ; ଆଖିରେ ଯାହାକୁ ଦେଖି ହୁଏନାଇ, ଅଥଚ ଆଖି ଯାହା ଦ୍ୱାରା ଦେଖେ; କାନରେ ଯାହାକୁ ଶୁଣି ହୁଏନାଇ— କାନ ଯାହାଦ୍ୱାରା ଶୁଣେ; କଥାରେ ଯାହାକୁ ବର୍ଣ୍ଣନା କରି ହୁଏନାଇ— କଥା ଯାହାଦ୍ୱାରା ବର୍ଣ୍ଣନା କରେ; ପ୍ରାଣରେ ଯାହାକୁ ଜୀବଂତ କରି ହୁଏନାଇ; ଅଥଚ ପ୍ରାଣ ଯାହାଦ୍ୱାରା ଜୀବଂତ ହୁଏ— ତାକୁହିଁ ବ୍ରହ୍ମ ବୋଲି ତୁ ଜାଣ୍। ଏହା ଭିନ୍ନ ଆଉ ଯାହାକୁ ବ୍ରହ୍ମ ବୋଲି ତୁ ଉପାସନା କରୁଛୁ, ସେ ବ୍ରହ୍ମ ନୁହେ। ଏଠାରେ ବିଶ୍ୱଶକ୍ତିମୟ ପରମାତ୍ମା ଓ ମାନବାତ୍ମାର ଅଭିନ୍ନ ସଂବଂଧ ସ୍ପଷ୍ଟ। ଜଡ଼ରୁ ଶକ୍ତି ବିକାଶ ଭ୍ରମ ହେବାର କୌଣସି ଶଂକା ନାହିଁ। ଗୁରୁ ସ୍ପଷ୍ଟ କହୁଛଂତି, ଯେ ଅନଂତ ଶକ୍ତି ବିଶ୍ୱମୟ ବ୍ୟାପିରହିଅଛି, ସେହି ମାନବାତ୍ମା ଭିତରେ ଏକପ୍ରକାର ଅବତାର ଗ୍ରହଣକରେ। ଏହିପରି ନାନାଭାବରେ ଶରୀର ଓ ଅବୟବାଦିର ଶକ୍ତି ସଂଗେ ବିଶ୍ୱଶକ୍ତିର ଏକତ୍ୱ ଅବବୋଧ ଉପନିଷଦ୍‌ରେ ଦେଖିବାକୁ ମିଳେ। ସାଧନାର ଏ ଅବସ୍ଥାରେ ଆର୍ଯ୍ୟର ଆଦର୍ଶ 'ସୋଽହଂ' ବିକାଶ ପାଇବାରେ ଆଉ ବିଶେଷ କିଛି ନାଇ। ଅଂତରରେ ଯେପରି ଗୋଟିଏ ଶକ୍ତି ବହିର୍ଜଗତ୍ ଆକ୍ରମଣ କରୁଅଛି, ବହିର୍ଜଗତ୍‌ରେ ସେହିପରି ଶକ୍ତି ପ୍ରତିଘାତରେ ଅନୁଭୂତ ହେଉଅଛି। ବହିର୍ଜଗତ୍‌ର ବିଗ୍ରହ ସଂଗେ ଶରୀରର ପ୍ରଭେଦ ନାଇ। ବହିର୍ଜଗତ୍‌ର ଶକ୍ତିସମୂହ ସଂଗେ ଇନ୍ଦ୍ରିୟାଦି ପୁରୁଷର ଜ୍ଞାନ କର୍ମ ଚୋଦନାମୟ ଶକ୍ତିମାନଂକର ମଧ୍ୟ ଅଭେଦ ସ୍ଥିର ହେଲା; ତେବେ ଆଉ ଶକ୍ତିଦ୍ୱୟର ଏକତାରେ କି ସଂଶୟ ?

ଉପନିଷଦ୍‌ରେ ସେଥିପାଇଁ କେତେବେଳେ ବାହାରର ଆତ୍ମାରୁ ଭିତରର ଅବବୋଧ ଏବଂ କେତେବେଳେ ଭିତରୁ ବାହାରର ଅବବୋଧ ଦେଖିବାକୁ ମିଳେ। ବିଶ୍ୱମୟ ଆତ୍ମାର ଉପାସନା ଏବଂ ସେଥିରୁ ନିଜର ଆତ୍ମ-ଅବବୋଧ ବିଷୟରେ ଉଦାହରଣ ଦେଇ ପ୍ରବଂଧ ବଢ଼ାଇବା ନିଷ୍ପ୍ରୟୋଜନ। ଏ କ୍ଷୁଦ୍ର ପ୍ରବଂଧ ମଧ୍ୟ ସେସବୁର ସ୍ଥାନ ନୁହେ। ପୁଣି ଉପରେ ପ୍ରସଂଗାଂତରରେ ଯେ ସବୁ ଉଦାହରଣ ଦିଆଗଲା, ସେଥିରେ ସେ ସଂବଂଧରେ ଯଥେଷ୍ଟ ଇଂଗିତ ମିଳିବ।

ଅଂତରରୁ ବାହାର ଉପଲବ୍ଧି ମଧ୍ୟ ଉପନିଷଦ୍‌ରେ ପୂର୍ଣ୍ଣ ରହିଅଛି। ମାନବ ଯେପରି ଜ୍ଞାନକର୍ମ ଚୋଦନାର ଶକ୍ତିସବୁ ଘେନି ପୁରୁଷରୂପେ ସଂସାରରେ କର୍ମ ପ୍ରବଂଧ ଫିଟାଇଅଛି, ବିଶ୍ୱାତ୍ମାକୁ ଆର୍ଯ୍ୟମାନେ ସେହି ପୁରୁଷରୂପେ ମାତ୍ର କଳ୍ପନା କରିଅଛଂତି। ଏହାହିଁ ଅଂତରରୁ ବାହାର ଉପଲବ୍ଧିର ଯଥେଷ୍ଟ ନିଦର୍ଶନ। ଏ ସଂବଂଧରେ ଅନ୍ୟାନ୍ୟ ଉପନିଷଦ୍‌ର ଇତସ୍ତତଃ ମଂତ୍ର ମଧ୍ୟରେ ବୃହଦାରଣ୍ୟକ ଉପନିଷଦ୍ ବିଶେଷରେ ଅନୁସଂଧେୟ। ପୁଣି ସେଥିରେ ପ୍ରଥମ ଅଧ୍ୟାୟର ୪ର୍ଥ ବ୍ରାହ୍ମଣ ପ୍ରାରଂଭରେ ବିଶ୍ୱାତ୍ମା ଓ ମାନବର ଅତଂରାତ୍ମା ବିଷୟରେ ଯେଉଁ ମଂତ୍ର ଅଛି, ତାହା ଆର୍ଯ୍ୟ-ଜୀବନର ଆଦର୍ଶ ଆଡ଼କୁ ପ୍ରାକୃତିକ ସାଧନାର ସିଦ୍ଧି ବିଷୟରେ ଗୋଟିଏ ସୁଂଦର ଆଲେଖ୍ୟ ଦେଉଅଛି। ଋଷି ଗାଇଅଛଂତି—

"ଆତ୍ମୈବେଦମଗ୍ରମାସୀତ୍ ପୁରୁଷବିଧଃ। ସୋଽନୁବୀକ୍ଷ୍ୟନାନ୍ୟଦାତ୍ମନୋଽପଶ୍ୟତ୍। ସୋଽହମସ୍ମୀତ୍ୟଗ୍ରେବ୍ୟାହରତ୍। ତତୋଽହଂ ନାମାଽଭବତ। ତସ୍ମାଦପ୍ୟେତର୍ହ୍ୟାମନ୍ତ୍ରିତୋଽହ ମସ୍ମୀତ୍ୟେବାଗ୍ର ଉକ୍ତ୍ୱାଽଥାନ୍ୟନ୍ନାମ ପ୍ରବ୍ରୂତେ – ଯଦସ୍ୟ ଭବନ୍ତି, ସ ଯତ୍ ପୂର୍ବୋଽସ୍ମାତ୍ ସର୍ବାନ୍ ପାପ୍ମାନଂ ଔଷତ୍। ତସ୍ମାତ୍ ପୁରୁଷଃ।"

ଅର୍ଥାତ୍, ସର୍ବପ୍ରଥମରୁ ସେ ପୁରୁଷ ପରି ଜ୍ଞାନ-କର୍ମ-ଚୋଦନଶକ୍ତିପରାୟଣ ବ୍ୟକ୍ତିପରି ଆତ୍ମା ଥିଲେ। ସେ ଚାରିଆଡ଼କୁ ଚାହିଁ ଆଲୋଚନା କରି ଆପଣାଠାରୁ ଭିନ୍ନ ଆଉ କିଛି ଦେଖିଲେ ନାଇ। ସେ ପ୍ରଥମେ "ଅହଂ ଅସ୍ମି" (ମୁଁ ହେଉଛି ସମସ୍ତର ଆତ୍ମା) ଏହି କଥା କହିଲେ; ସେହି ହେତୁରୁ ସେ ମୁଁ (ଅହଂ) ବୋଲି ପରିଚିତ ହେଲେ; ତେଣୁ ଏବେ ମଧ୍ୟ 'ତୁଂଭେ କିଏ?' ବୋଲି ପଚାରିଲେ, ଲୋକ କହଂତି 'ଅହମସ୍ମି' (ଏହି ମୁଁ), ଏ କଥା କହିଲା ପରେ ନିଜର ନାମ ଓ ଅନ୍ୟ ପରିଚୟ କହଂତି। ସେହି ଆଦିପୁରୁଷ ଯେହେତୁ ପୂର୍ବର ସବୁ ପାପ ଦଗ୍ଧ କରି (ନିଷ୍କଳଂକ ହୋଇ) ଥିଲେ, ସେହି ହେତୁରୁ ତାଂକ ନାମ ହେଲା ପୁରୁଷ (ପୂର୍ବଂ ଔଷତ୍ – ପୂର୍ବପାପ ଦଗ୍ଧ କରିଥିଲେ; ଅତଏବ ପୁରୁଷ)।

ସମସ୍ତ ବିଶ୍ୱ-ବ୍ରହ୍ମାଂଡର ମୂଳ ଶକ୍ତି ସଂଗେ 'ମୁଁତ୍ୱ' (ଅହଂତା)ର ଏହି ଏକତାହିଁ ଆର୍ଯ୍ୟଜୀବନ ବିକାଶର ସ୍ୱାଭାବିକ ଆଦର୍ଶରୂପେ ଫୁଟିଅଛି। ପ୍ରାକୃତିକ ସାଧନାରେ ଆର୍ଯ୍ୟଜୀବନରେ ଏହାହିଁ ସିଦ୍ଧି। ଏହାହିଁ ମୌଳିକ ଜାତୀୟତାର ସ୍ୱତଃସିଦ୍ଧ ଆଦର୍ଶ। ଏଥିରେ ଅନଂତ ସୃଷ୍ଟିର ମହାଶକ୍ତି ସଂଗେ ଆତ୍ମଶକ୍ତି ଏକ। ସର୍ବତ୍ର ଅଭେଦନୀତି; ଘୃଣା ନାଇ, ବୈଷମ୍ୟ ନାଇ। ସମସ୍ତ ବିଶ୍ୱବ୍ରହ୍ମାଂଡରେ ଆର୍ଯ୍ୟ ଏକ ବିଶ୍ୱମୟ ଶକ୍ତି ଦେଖେ। ସଂସାରର ସରଳ ବ୍ୟାଖ୍ୟା ତାହା ପକ୍ଷରେ –

"ଯଥା ସୌମ୍ୟେକେନ ମୃତ୍ପିଣ୍ଡେନ
ସର୍ବଂ ମୃଣ୍ମୟଂ ବିଜ୍ଞାତଂ
ସ୍ୟାଦ୍ୱାଚା ରମ୍ଭଣଂ ବିକାରେ
ନାମଧେୟଂ ମୃର୍ତ୍ତିକେତ୍ୟେବ ସତ୍ୟଂ।"

(ଛାନ୍ଦୋଗ୍ୟ ଉପନିଷଦ୍, ୬।୧।୪)

ମୃଣ୍ମୟ ଦ୍ରବ୍ୟସବୁ (ଘଟ ପ୍ରଭୃତି) ଯେପରି ଏକ ମୃତ୍ତିକାରେ ନିର୍ମିତ ହୋଇ ନାମ-ରୂପଭେଦରେ ଭିନ୍ନ ଭିନ୍ନ, ନାମରୂପମୟ ବିଚିତ୍ର ବିଶ୍ୱ ସେହିପରି ଏକ ବ୍ରହ୍ମ ପଦାର୍ଥରେ ନିର୍ମିତ; ଅର୍ଥାତ୍ ଏକ ବ୍ରହ୍ମ ପଦାର୍ଥର ଅଭିବ୍ୟକ୍ତି।

ଅବଶ୍ୟ ଏଠାରେ ମଧ୍ୟ ଆର୍ଯ୍ୟର ଏ ବ୍ରହ୍ମପଦାର୍ଥକୁ ଜଡ଼ ପ୍ରକୃତିର କେବଳ ଗୋଟିଏ ଏକତ୍ୱ ଧାରଣା ବୋଲି ବୁଝିବାକୁ ହେବ ନାଇ। ଏହା ଗୋଟିଏ ଜୀବଂତ ଶକ୍ତି, ପୁରୁଷ ପରି ଜୀବନମୟ ଓ ଅନଂତ ଚୋଦନପରାୟଣ। ଏହି ବିଶ୍ୱବ୍ୟାପୀ ଶକ୍ତିର ଅନଂତ ଜୀବଂତ ବିଚିତ୍ର ଉଦ୍ଭେଦ ବର୍ଣନା କରି ଆର୍ଯ୍ୟ ପୁଣି କହେ –

"×××ଅତଃ ସମୁଦ୍ରା ଗିରୟଶ୍ଚ ସର୍ବେଽସ୍ମାତ୍
ସ୍ୟନ୍ଦନ୍ତେ ସିନ୍ଧବଃ ସର୍ବରୂପା
ଅତଶ୍ଚ ସର୍ବା ଔଷଧୟୋ ରସଶ୍ଚ
ଯେନୈଷ ଭୂତୈ ସ୍ତିଷ୍ଠତେ ହ୍ୟନ୍ତରାତ୍ମା ।"

(ଦ୍ୱିତୀୟ ମୁଂଡକ, ୧।୫ – ୯)

ଅର୍ଥାତ୍, ଋକ୍ ପ୍ରଭୃତି ବେଦଠାରୁ ଗିରି, ନଦୀ, ସମୁଦ୍ର ପର୍ଯ୍ୟଂତ ସବୁ ଏଥିରୁ ହୋଇଅଛି। ଏହା ସମସ୍ତର ଅଂତରାତ୍ମାରୂପେ ସମସ୍ତଂକୁ ଶକ୍ତିମାନ୍ କରି ରହିଅଛି। ସେହି ପୁଣି ବାୟୁ ପରି ବା ସୂର୍ଯ୍ୟ ପରି ସର୍ବଭୂତ ଅଂତରରେ ରହିଅଛଂତି; ମାତ୍ର କାହାରି ସୁଖ ଦୁଃଖ ବିକାରାଦିରେ ଲିପ୍ତ ନୁହଂତି। (କଠୋପନିଷଦ୍ ୨।୨।୨।୧୦ – ୧୧) ସେହି ପୁଣି ମନୁଷ୍ୟ ଭିତରେ ବିଦ୍ୟମାନ।

"ସ ଯଃ ଏଷୋଽଣି ମେ ତଦାତ୍ମ୍ୟମିଦଂ
ସର୍ବଂ ତତ୍ ସତ୍ୟଂ, ସ ଆତ୍ମା, ତତ୍ତ୍ୱମସି।" (ଛାନ୍ଦୋଗ୍ୟ : ୬।୮।୮, ୧୫)

ଅର୍ଥାତ୍, ସେହି ଯେ ସୂକ୍ଷ୍ମ ପଦାର୍ଥ, ଏ ସମସ୍ତ ତତ୍ସ୍ୱରୂପ, ସେହି ସତ୍ୟ, ସେହି ଆତ୍ମା, ସେହି ତୁଂଭେ। ସେହି ଭିତରେ, ସେହି ବାହାରେ (ଛାନ୍ଦୋଗ୍ୟ : ୭।୨୫।୨)। ସେହି "ଦିବ୍ୟୋହ୍ୟମୂର୍ତ୍ତଃ ପୁରୁଷଃ, ସ ବାହ୍ୟାଭ୍ୟନ୍ତରୋହ୍ୟଜଃ।" ଅର୍ଥାତ୍, ସେହି ଦିବ୍ୟ (ତେଜସ୍ୱରୂପ) ରୂପହୀନ ପୁରୁଷ, ସେହି ଜନ୍ମବର୍ଜ୍ଜିତ (ଚିତ୍‌ଶକ୍ତି) ବାହାର ଓ ଅଭ୍ୟଂତରରେ ବିଦ୍ୟମାନ ରହିଅଛଂତି।

କହିବା ଅନାବଶ୍ୟକ, ସେହି ବ୍ରହ୍ମ ବା ଆତ୍ମା, ସେହି ବିଶ୍ୱବ୍ୟାପୀ ଓ ଆଭ୍ୟଂତରୀଣ ଶକ୍ତି 'ସଚ୍ଚିଦାନଂଦ' ସ୍ୱରୂପ। ମୁଁ ଯେପରି ସବୁ ଜାଣେ, ସବୁ ଅନୁଭବ କରେ, ଅଥଚ ଯେ 'ମୁଁ' ଏ ସବୁ କରେ, ତାକୁ କେହି ଜାଣଂତି ନାଇ। ଏ ବାହ୍ୟାଭ୍ୟଂତର ଶକ୍ତି ସେହିପରି ସବୁ ଜାଣେ; ତାକୁ କେହି ଜାଣଂତି ନାଇ— ଇତ୍ୟାଦି ଦାର୍ଶନିକ ତତ୍ତ୍ୱବ୍ୟାଖ୍ୟାର ଏ ସ୍ଥାନ ନୁହେ। ତେବେ ଏତିକି କହିଲେ ଯଥେଷ୍ଟ ହେବ ଯେ, ଆର୍ଯ୍ୟ ଏହି ପ୍ରାକୃତିକ ସାଧନାରେ, ଏହି ସ୍ୱାଭାବିକ ଆତ୍ମପ୍ରସାରରେ ଯେ ଆଦର୍ଶ ଲଭିଥିଲା, ଯେ ଆତ୍ମସ୍ୱରୂପ ଅନୁଭବ କରିଥିଲା, ସେଥିରେ ସେ ନିଜକୁ ବିଶ୍ୱ ସଂଗେ ମିଶାଇଦେଇଥିଲା। ଈଶ୍ୱର ପଦାର୍ଥ ସଂବଂଧରେ ତାହାର ଆଉ ସଂଶୟ ନ ଥିଲା। ଏ କ୍ଷେତ୍ରରେ ସେ ଜାତୀୟ ଜୀବନର ଅତୁଳନୀୟ ମୌଳିକତା ଦେଖାଇଆସିଅଛି।

ସର୍ବଶେଷରେ ସଂଦେହ ନିରାସ କରିବା ପାଇଁ, ଗୋଟିଏ କଥା ଏଠାରେ ପୁଣି ଭଲକରି କହିରଖିବା ଉଚିତ। ଶ୍ରୁତି ଶାସ୍ତ୍ର ପ୍ରଭୃତିର ଉପଦେଶ, ଯଦି ଜୀବନର ଏହି ଆଦର୍ଶ ଦୃଢ଼ ଓ ସ୍ଥିର ରଖିବାର ଉଦ୍ୟମ ବା ପ୍ରୟାସ ହୁଏ, ତେବେ ଶ୍ରୁତିର ଏ ପ୍ରମାଣସବୁ ଜୀବନର ପ୍ରାକୃତିକ ବିକାଶ ଓ ମୌଳିକ ସାଧନା ସାବ୍ୟସ୍ତ କରିବ କିପରି ? ଏଠାରେ ପୁଣି ଏ କଥା ବେଶି ବୁଝାଇବା ନିଷ୍ପ୍ରୟୋଜନ।

ଶ୍ରୁତି, ଶ୍ରୁତି; ଶୁଣି ଶୁଣି ଲୋକେ ତାହା ମନେରଖିଥିଲେ। ସାଧାରଣ ଭାବରେ ବୁଝିଲେ, ଜାତିର ଲୋକମାନଂକ ମନରେ ଯେତେବେଳେ ଯେଉଁ ଭାବ ସ୍ୱତଃ ଫୁଟିଉଠିଥିଲା, ସେତେବେଳେ ମନସୁଖରେ, ପ୍ରାଣ-ପୁଲକରେ ସେମାନେ ସେହି ଭାବରେ ଗାଇଥିଲେ। ସେହି ସବୁ ଗାନହିଁ ଆଂଭର ଶ୍ରୁତି, ଆଂଭର ବେଦ; ଏହା ମନୀଷୀମାନଂକ ପ୍ରଚାରିତ ମତବାଦ ନୁହେ। ପ୍ରଥମେ ଲିପିବଦ୍ଧ ବା ବିଧିମତେ ସଂକଳିତ ହୋଇ ଏହା ପ୍ରଚାରିତ ହୋଇନାଇ। ଜାତୀୟ ଜୀବନର ସ୍ୱଭାବ ବିକାଶରେ ଯେ ଭାବ ଯେତେବେଳେ ଜାତିର ସଂପତ୍ତି ହୋଇଥିଲା, ତାହାହିଁ ସେତେବେଳେ ସରଳପ୍ରାଣ ଆର୍ଯ୍ୟଋଷିଂକ ଗାନରେ ପ୍ରକାଶ ପାଇଅଛି। ଶୁଣି ଶୁଣି ଯୋଗିଗୀତ ପରି ଲୋକେ ତାହା ମନେ ରଖିଥିଲେ ବୋଲି ଆଜି ଆଂଭେ ବେଦ ଦେଖୁଅଛୁଁ। ଆଜି ସେ ସବୁ ଗ୍ରଂଥାକାରରେ ଲିପିବଦ୍ଧ ହୋଇଅଛି ସତ; କିଂତୁ କେବେ କାହାକୁ ଉପଦେଶ ଦେବାପାଇଁ ସେ ସବୁ ଲିଖିତ ହୋଇ ନାଇ, କିଂବା ଶିକ୍ଷଣୀୟ ବିଷୟ ପରି ସମାଜର ମୁଖ୍ୟ ବ୍ୟକ୍ତିଂକ ଆଡୁ ତଳକୁ ପ୍ରଚାର ପାଇ ନାଇ। ସେସବୁ ମନୀଷୀମାନଂକ ଦର୍ଶନର ମତ ବା ବିଜ୍ଞାନର ଆବିଷ୍କ୍ରିୟା ନୁହେ— ଜାତିର ସ୍ୱାଭାବିକ ଭାବ-ବିକାଶ ମାତ୍ର। ସେଥିପାଇଁ ଏବେ ମଧ୍ଯ ଏ ଦେଶର ଜନସାଧାରଣ ବେଦ ବା ଶାସ୍ତ୍ର ନ ଜାଣି, ଇତରବିଶେଷ ପରିମାଣରେ ସେହି ଭାବରେ ଭାବାନ୍ୱିତ ରହିଅଛଂତି।

ଆଜି ସମାଜରେ ଯେଉଁ ପ୍ରତିମାପୂଜା ଓ ବହୁ ଦେବଦେବୀରୂପରେ ଈଶ୍ୱର ଉପାସନାର ଅନୁଷ୍ଠାନ ଆଂଭେମାନେ ଦେଖୁଅଛୁଁ, ତାହା ସେହି ବୈଦିକ ଆର୍ଯ୍ୟ ଉପାସନାର ଛାୟା-ମାତ୍ର; ସ୍ୱତନ୍ତ୍ର ଜଡ଼ଶକ୍ତି ପୂଜାରେ ଅନଂତ ବିଶ୍ୱଶକ୍ତିର ଅବବୋଧ ମାତ୍ର। ଯେଉଁମାନେ ଆର୍ଯ୍ୟ-ଭୂମିରେ ପ୍ରତିମାପୂଜାର ପ୍ରକୃତି ଓ ପ୍ରକ୍ରିୟାମାନ ଆଲୋଚନା କରି ବୁଝିଅଛଂତି, ସେମାନେ ନିଶ୍ଚୟ ଏଥିରେ 'ବିଶ୍ୱେଦେବା' ମଂତ୍ର ଦେଖିଥିବେ।

ପୃଥିବୀରେ ବହୁତ ଆଦିମ ଜାତି ମଧ୍ୟରେ ପ୍ରତିମାପୂଜା ଅଛି; କିଂତୁ ଅନେକ ସ୍ଥଳରେ ସେସବୁ କେବଳ ଭୟରେ ଜଡ଼ର ପୂଜା, କିଂବା ଜଡ଼ରେ ଶକ୍ତି ଆରୋପ ମାତ୍ର; ସେଥିରେ ଏ ଅନଂତତତ୍ତ୍ୱର ଅବବୋଧ ନାଇ। ଶିବ (ମଂଗଳମୟ ଶକ୍ତି), ବିଷ୍ଣୁ (ସର୍ବବ୍ୟାପୀ ଶକ୍ତି) ପ୍ରଭୃତିର ପୂଜାକୁ ପ୍ରତିମା ପୂଜା ନାମ ଦେଇ, ଯେଉଁମାନେ ଆର୍ଯ୍ୟର ମାନବୀୟ ଅବଲଂବନରେ ସଚ୍ଚିଦାନନ୍ଦ ସ୍ୱରୂପ ଜୀବଂତ ବିଶ୍ୱଶକ୍ତିର ପୂଜା, ''ଚିଦାନନ୍ଦ ରୂପଃ ଶିବୋଽହଂ'' ଭାବ ସମାଲୋଚନା କରିବାକୁ ପ୍ରବୃତ୍ତ ହୁଅଂତି, ସେମାନଂକ ପକ୍ଷରେ ପ୍ରତିମାପୂଜାର ଏ ପ୍ରକୃତି-ବୈଷମ୍ୟ ସର୍ବାଦୌ ହୃଦୟଂଗମ କରିବା ଉଚିତ।

ମାତ୍ର ଆର୍ଯ୍ୟ ସର୍ବଦା ନିଜ ଭୂମିରେ ଆବଦ୍ଧ ହୋଇ ବଢ଼ିନାଇ; ଅନ୍ୟ ଭାବ ଓ ଆଦର୍ଶ ସଂପର୍କରେ ଆସିଅଛି, ଅନ୍ୟପ୍ରକାର ଶିକ୍ଷା ପାଇଅଛି। ନାନା

କାରଣରୁ ଏହି ଭୂମିରେ ଆର୍ଯ୍ୟଭାବ ଶିଥିଳ ହୋଇଯିବାର ଆର୍ଯ୍ୟ ମନୀଷୀଂକର ଆଶଂକା ହୋଇଅଛି। ସେହି ଶିଥିଳତାର ପ୍ରତିବିଧାନ କାମନାରେ କିଂବା ଜାତୀୟ ଆଦର୍ଶ ଦୃଢ଼ କରିବା ପାଇଁ ଏ ଦେଶରେ ପରେ ଏତେ ଧର୍ମତତ୍ତ୍ୱ ପ୍ରଚାର, ଶାସ୍ତ୍ର-ପୁରାଣର ସୃଷ୍ଟି ଓ ଆର୍ଯ୍ୟଭାବଶିକ୍ଷାର ବ୍ୟାକୁଳତା; ମାତ୍ର ସବୁ ମଧ୍ୟରେ କୌଣସିଠାରେ ନୂତନ ସାଧନା ବା ଆଦର୍ଶ କେହି ଦିଅଂତି ନାଇ। ସେଥିପାଇଁ ମନୀଷୀ ଶାସ୍ତ୍ରକାରଗଣ ଯେ ଉପଦେଶ ଦିଅଂତି, ସେଥିରେ ସର୍ବତ୍ର ବେଦହିଁ ପ୍ରମାଣ। ବେଦର ସେହି ସ୍ଥିର ଆଦର୍ଶ ଏ ଜାତିର ପରମ ସଂପଦ; ତାହାହିଁ ଏ ଜାତିର ମୌଳିକ ମେରୁଦଂଡ। ସେହି ଆତ୍ମପ୍ରସାର ଓ ସେହି ଆତ୍ମୋତ୍ସର୍ଗ ଏ ଭୂମିରେ ଥିବାଯାଏ, ଏ ଜାତିର ଜାତୀୟତା ଅଛି । ରକ୍ତ, ମାଂସ, ପିଂଡ ବା ଅପରିବର୍ତ୍ତିତ ଭୂମିଖଂଡରେ ଜାତୀୟତା ରହେ ନାଇ। ଜାତୀୟତା ରହେ, ଭାବରେ— ଆଦର୍ଶରେ— ଜାତୀୟ ଜୀବନର ମୌଳିକତା ଓ ଶକ୍ତିରେ। ସଂସାର-କର୍ମଚକ୍ରରେ ମୋହ ଆସିପାରେ, ଅନାର୍ଯ୍ୟ ଭାବ ଆକ୍ରମଣ କରିପାରେ, ଜୀବନ-ସଂଗ୍ରାମ-ଭ୍ରୂକୁଟୀ ତ୍ରାସ ଜନ୍ମାଇପାରେ; କିଂତୁ ଆର୍ଯ୍ୟଭାବ ଜଗତ୍‌ରେ ସ୍ଥିର ଓ ଦୃଢ଼ ରଖିବାକୁ ହେବ। ସମସ୍ତ ଆବରଣ ମଧ୍ୟରେ ଜୀବାତ୍ମା ପରମାତ୍ମାର ସେହି ମହା ସମନ୍ୱୟ ରୂପ ଅନଂତ ପ୍ରୀତିର କଲ୍ୟାଣ ହୃଦୟରେ ଦୃଢ଼ ରଖିବାକୁ ହେବ। ଜୀବନର ଶକ୍ତି ଦୃଢ଼ ରଖିଲେ, କୌଣସି ଆଦାନ ବା ଆହରଣରେ ଜାତୀୟତା ନଷ୍ଟ ହେବ ନାଇ। ବିଶ୍ୱଶକ୍ତିର ଅନଂତ ସତ୍ତା ହୃଦୟରେ ଦୃଢ଼ ହେଲେ ଜୀବନ-ସଂଗ୍ରାମରେ ଆଉ ସଂଶୟ ରହିବ ନାଇ— ମୋହ ନାଶ ହେବ, ପାପ କ୍ଷୟ ହେବ।

''ଭିଦ୍ୟତେ ହୃଦୟ ଗ୍ରନ୍ଥି ଶ୍ଛିଦ୍ୟନ୍ତେ ସର୍ବ ସଂଶୟଃ
କ୍ଷୀୟନ୍ତେ ଚାସ୍ୟ କର୍ମାଣି ତସ୍ମିନ୍ ଦୃଷ୍ଟେ ପରାବରେ।''

□□□